# କବିତାଶ୍ରୀ

•

ସଂକଳନ ଓ ସଂପାଦନା :

ଡକ୍ଟର ଗଙ୍ଗାଧର ବଳ, ଡି. ଲିଟ୍.

ପ୍ରଫେସର ଓ ମୁଖ୍ୟ ଅଧ୍ୟାପକ ଓଡ଼ିଆ ବିଭାଗ

ରେଭେନ୍ସା କଲେଜ

କିତାବ ମହଲ

କଟକ

*Digitized by srujanika@gmail.com*

# କବିତାଶ୍ରୀ

ସଂକଳନ ଓ ସଂପାଦନା :
ଡକ୍‌ଟର ଗଙ୍ଗାଧର ବଳ

ପ୍ରକାଶକ :
କିତାବ ମହଲ
କଲେଜ ଛକ, କଟକ-୩

ପ୍ରଥମ ସଂସ୍କରଣ
୧୯୮୩

ମୁଦ୍ରଣ :
ଚନ୍ଦ୍ରଶ୍ରୀ ପ୍ରିଣ୍ଟର୍ସ
କଲେଜ ଛକ, କଟକ-୩

ମୂଲ୍ୟ – ଟ ୮.୦୦

Digitized by srujanika@gmail.com

# ମୁଖଶାଳା

ସାହିତ୍ୟ ଗୋଟିଏ ଜାତିର ଯଥାର୍ଥ ପରିଚୟ ପତ୍ର । ସାହିତ୍ୟ ଭିତରେ ସଭ୍ୟତା ଓ ସଂସ୍କୃତିର ବାଣୀ ଝଂକୃତ ହୋଇଥାଏ । କବି ଓ ଲେଖକର ଚିନ୍ତା ଓ ଚେତନାର ଶିଳ୍ପ-ସୁନ୍ଦର କଳାମଞ୍ଜୁଳ ରସସିକ୍ତ ରୂପ ସାହିତ୍ୟରେ ଯେପରି ଫୁଟି ଉଠେ, ସମୟର ପ୍ରାଣ-ସ୍ପନ୍ଦନ ମଧ୍ୟ ସେହିପରି ସ୍ପନ୍ଦିତ ହୋଇଥାଏ । ଓଡ଼ିଆ ସାହିତ୍ୟର ଇତିହାସ ଅନୁଶୀଳନ କଲେ ଏହି ଉକ୍ତିର ସତ୍ୟତା ଉପଲବ୍ଧ ହୁଏ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଗଦ୍ୟକୃତି ଦୁର୍ଲ୍ଲଭ ନ ହେଲେହେଁ, ଏହା ମୁଖ୍ୟତଃ ଗୀତିମୟ, କାବ୍ୟବହୁଳ । ଚର୍ଯ୍ୟାଗୀତି ମଧ୍ୟରେ ଆମେ ଓଡ଼ିଆ ସାହିତ୍ୟର ଆଦ୍ୟ ଉନ୍ମେଷ ଲକ୍ଷ୍ୟ କରୁ । ଚର୍ଯ୍ୟାଗୀତି ଯଥାର୍ଥରେ ଓଡ଼ିଆ ସାହିତ୍ୟର ଆଦ୍ୟ ଅରୁଣିମା । ଏହି ପୁଣ୍ୟ କୀର୍ତ୍ତିଶାଳିନୀ ଉତ୍କଳ ଯୁଗେ ଯୁଗେ ବହୁ ସିଦ୍ଧ ସାଧକଙ୍କୁ ଜନ୍ମ ଦେଇଛି । ସେମାନେ ସେମାନଙ୍କ ଦିବ୍ୟ ଅନୁଭବ ସଞ୍ଜାତ ଭାବଧାରାକୁ କାବ୍ୟ କବିତା ଓ ସଙ୍ଗୀତ ଭିତରେ ତରଂଗାୟିତ କରି ଯାଇଛନ୍ତି । ଚର୍ଯ୍ୟାଗୀତିର ସିଦ୍ଧସାଧକଗଣ ଏ ପ୍ରସଙ୍ଗରେ ସ୍ମରଣୀୟ । 'ଉଡ଼ିୟାନର' ଅଧିବାସୀ ରୂପେ ଇତିହାସର ପୃଷ୍ଠାରେ ପରିଚିତ ସରହପାଙ୍କ ପରି ସିଦ୍ଧକବି ନିଜ ଗୀତିର ମାଧ୍ୟମରେ ମଣିଷକୁ ଆଲୋକିତ ସରଣୀର ସନ୍ଧାନ ଦେଇଯାଇଛନ୍ତି—

"ଜହି ମନ ପବନ ନ ସଞ୍ଚରଇ, ରବି ସସି ନାହିଁ ପବେଶ
ତହି ବଟ ଚିତ୍ତ ବିସାମ କରୁ ସରେହେ କହିଅ ଉବେସ ।
ଘୋର ଅନ୍ଧାରେ ଚନ୍ଦ୍ରମଣି ଜିମି ଉଜ୍‌ଜୋଅ କରେଇ
ପରମ ମହାସୁହ ଏଣୁ କଣେ ଦୁରିଅ ଅଶେଷ ହରେଇ ।"

ଅଖଣ୍ଡ ଅନାହତ ଅବିମିଶ୍ର ସୁଖ ଓ ଶାନ୍ତି ମଣିଷର ଚିରନ୍ତନ ସ୍ୱପ୍ନ । 'ମହାସୁଖ' ମଣିଷକୁ ବାଞ୍ଛିତ ପଥରେ ଗତିଶୀଳ କରି ତାର ସକଳ ଦୁଃଖର ଅବସାନ ଘଟାଇଥାଏ । ଏହାହିଁ ଦୂର ଅତୀତରେ ଏ ଦେଶର ସିଦ୍ଧ ସାଧକ ସରହପା ତାଙ୍କ ଗୀତିରେ କହିଛନ୍ତି । ଚର୍ଯ୍ୟାଗୀତିର ଅନ୍ତଃ ରୂପରେ ସମକାଳୀନ ଧର୍ମ ଓ ଦର୍ଶନ ଏବଂ ବହିଃ ରୂପରେ ଅନେକାଂଶ ସମକାଳୀନ ସମାଜ ଜୀବନର ବିବିଧ ଚିତ୍ର ଦେଖିବାକୁ ମିଳେ । ଚର୍ଯ୍ୟାଗୀତି ପରେ ସାରଳା ଦାସଙ୍କ ଆବିର୍ଭାବ ପୂର୍ବରୁ ନାଥଧର୍ମତତ୍ତ୍ୱ ଆଧାରିତ ନାଥ ସାହିତ୍ୟର ବହୁଳ ପ୍ରସାର ଘଟିଥିଲା । ତାତ୍କାଳିକ ସାହିତ୍ୟ ସୃଷ୍ଟି ମଧ୍ୟରେ 'ଅମରକୋଷଗୀତା' ଓ ମତ୍ସ୍ୟେନ୍ଦ୍ରଗୀତା ପ୍ରଭୃତି ବିଶେଷ ଲୋକପ୍ରିୟ ହୋଇପାରିଛି । ନାଥ ସାହିତ୍ୟ ପରି ଶୈବ ସାହିତ୍ୟ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନ୍ୟତମ ଦିଗ୍‌ବଳୟ । 'ଏକାମ୍ର ପୁରାଣ', 'ସ୍ୱର୍ଣ୍ଣାଦ୍ରି ମହୋଦୟ' ଏବଂ 'କପିଳ ସଂହିତା' ଭଳି ସୃଷ୍ଟି ଏହାର ପ୍ରମାଣ ।

Digitized by srujanika@gmail.com

ଲିଖିତ ସାହିତ୍ୟ ପରି ଅଲିଖିତ କୃତି (ଲୋକ ସାହିତ୍ୟ) ପ୍ରାଚୀନ ସାହିତ୍ୟର ବିଶିଷ୍ଟ ବିଭବ । ମଧୁର ଚଢ଼ିଥିବା ଶିଳ୍ପୀ ଓ ଲୋକକବିଙ୍କର ପରିଚୟ ଚିରଦିନ ପାଇଁ ଅଜ୍ଞାତ ହୋଇ ରହିଥିଲେହେଁ, ଏମାନଙ୍କର ସୃଷ୍ଟିସମ୍ପଦରେ ଆମ ସାହିତ୍ୟ ବିଭବଶାଳୀ ହୋଇଛି । ସରଳ ଭାଷାରେ ହୃଦୟର ସ୍ୱତଃସ୍ଫୂର୍ତ୍ତି ଆବେଗ ଲୋକଗୀତରେ ଛନ୍ଦୋବଦ୍ଧ ହୋଇଛି । ଜୀବନର ରୂପ, ରସ ଓ ଛନ୍ଦ ଏବଂ ସମାଜଜୀବନର ବିବିଧ ଦିଗବଳୟ ଲୋକସାହିତ୍ୟରେ ଅତି ସୁନ୍ଦର ଓ ପ୍ରାଣସ୍ପର୍ଶୀ ଭାବରେ ରୂପାୟିତ ହୋଇଛି ।

ଓଡ଼ିଶାର ଇତିହାସରେ କପିଳେନ୍ଦ୍ର ଯୁଗ ଗୌରବଦୀପ୍ତ । ଏହି ଯୁଗରେ ଗଜପତିଙ୍କର ଅଦମ୍ୟ ସାମରିକ ଅଭିଯାନ ଫଳରେ ଓଡ଼ିଶାର ରାଜନୈତିକ ସୀମା ପରିସ୍ଫୀତ ହୋଇଥିଲା । ସାଂସ୍କୃତିକ କ୍ଷେତ୍ରରେ ମଧ୍ୟ ଏହି ଯୁଗ ପ୍ରାଚୀନ ଉତ୍କଳର ସ୍ୱର୍ଣ୍ଣଯୁଗ । ଏହି ସମୟରେ କବି ସାରଳା ଦାସଙ୍କ ଆବିର୍ଭାବ । ସାରଳା ଦାସ ହିଁ ଓଡ଼ିଶାର ପ୍ରଥମ କବି, ଯିଏ ମାତୃଭାଷାରେ ପ୍ରଥମେ ପୁରାଣ ଲେଖିବାକୁ ତପସ୍ୟା କରିଥିଲେ । ତାଙ୍କ ମହାଭାରତ, ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣ ଏହାର ପ୍ରମାଣ । ଗୋଟିଏ ସାହିତ୍ୟ ସୃଷ୍ଟିର ମହିମା ତାର ପ୍ରଭାବିତ କରିବାର ଶକ୍ତିରୁ ହିଁ ବ୍ୟଞ୍ଜିତ ହୋଇଥାଏ । ଓଡ଼ିଶାର ଜନଜୀବନରେ ସାରଳାମହାଭାରତର ପ୍ରଭାବ ଏବେବି ଅନାହତ ରହିଛି । ବିଭିନ୍ନ ସମୟରେ ଓଡ଼ିଶାର ବିଭିନ୍ନ କବିଙ୍କୁ ମଧ୍ୟ ଏହା ନାନା ଭାବରେ ଉଦ୍‌ବୁଦ୍ଧ କରିଆସିଛି । ସାରଳା ମହାଭାରତରେ ପୁରାଣର ପୃଷ୍ଠଭୂମିରେ ସମକାଳୀନ ଓଡ଼ିଶାର ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ଆଧ୍ୟାତ୍ମିକ ଚିତ୍ର ଅତି ସୁନ୍ଦର ଭାବରେ ଫୁଟି ଉଠିଛି ।

ପ୍ରାଚୀନ ଓଡ଼ିଆ ସାହିତ୍ୟ ଉପରେ ଏକ ଶୂନ୍ୟସନ୍ଧାନୀ ଦୃଷ୍ଟିପାତ କାଳରେ ପ୍ରାଚୀନ ଓଡ଼ିଆ ଗୀତି କବିତା ଆମର ଦୃଷ୍ଟି ଆକର୍ଷଣ କରିଥାଏ । ଚଉତିଶା ଓ କୋଇଲି ଭଳି ଗୀତି କବିତାର ବିଭିନ୍ନ ଶିଳ୍ପରୂପ ପ୍ରାଚୀନ ସାହିତ୍ୟର ମଣିମାଣିକ୍ୟ । ଏବେବି ଉତ୍କଳର ବିଭିନ୍ନ ପଲ୍ଲୀରେ ଚୌପଦୀ, ଚଉତିଶା ଓ କୋଇଲିର ଆଦର ହ୍ରାସ ପାଇନି । କବି ବତ୍ସା ଦାସଙ୍କ ବିଖ୍ୟାତ 'କଳସା ଚଉତିଶା' ଏବଂ କବି ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' ଓଡ଼ିଆ ସାହିତ୍ୟର ଇତିହାସରେ ବିଶେଷ ମର୍ଯ୍ୟାଦାଲାଭ କରିଅଛି ।

ସାରଳାଙ୍କ ପରବର୍ତ୍ତୀ କାଳରେ ଆମ ସାହିତ୍ୟରେ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତଙ୍କ ଆବିର୍ଭାବ ସାହିତ୍ୟର ଇତିହାସରେ ନୂତନ ଅଧ୍ୟାୟ ଉନ୍ମୋଚନ କରିଛି । ଗଜପତି ପ୍ରତାପରୁଦ୍ରଦେବଙ୍କ ସମକାଳୀନ ଏହି ସନ୍ଥକବିଗଣଙ୍କ ସୁମହାନ୍ ସୃଷ୍ଟି ଓଡ଼ିଶାର ସମାଜ ଜୀବନକୁ ବିଶେଷ ଭାବରେ ଅନୁପ୍ରାଣିତ କରିଛି । ଓଡ଼ିଶାରେ ଏପରି କୌଣସି ଜନପଦ ନାହିଁ, ଯେଉଁଠାରେ ବଳରାମ ଦାସଙ୍କ ରାମାୟଣ ଓ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତ ଆଦୃତି ଲାଭ କରିନାହିଁ । ମହାକାଳର ମହାସ୍ରୋତରେ ଏହି ସନ୍ଥକବିଗଣଙ୍କର ସାଧନା ହଜିଯାଇନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଶ୍ରୀ ଶ୍ରୀ ଜଗନ୍ନାଥ ଯୁଗେ ଯୁଗେ ଉତ୍କଳର

Digitized by srujanika@gmail.com

ଆଧ୍ୟାତ୍ମିକ ଚେତନାର ହୃତ୍‌ପିଣ୍ଡ । ବିଭିନ୍ନ ସମୟରେ ଏ ଦେଶର ଜଗନ୍ନାଥ ଚେତନାରେ ବିଭିନ୍ନ ଆଧ୍ୟାତ୍ମିକ ଚେତନା ଏକାକାର ହୋଇ ଯାଇଛି । ବିଭିନ୍ନ ଧର୍ମଧାରା ଭିତରେ ଶ୍ରୀଶ୍ରୀ ଜଗନ୍ନାଥହିଁ ସମନ୍ୱୟର ପ୍ରତୀକ । ବଜ୍ରଯାନୀଙ୍କ ମତରେ ସେହିଁ ଶୂନ୍ୟର ପ୍ରତୀକ । ମାଝ ସାରଳା ନିଜ ମହାଭାରତରେ ଜଗନ୍ନାଥଙ୍କର ମହିମାଗାନରେ ମୁଖରିତ ହୋଇଛନ୍ତି । ପଞ୍ଚସଖାଙ୍କ ଆଧ୍ୟାତ୍ମିକ ଚେତନାରେ ମଧ୍ୟ ଏହି ଜଗନ୍ନାଥ ଚେତନାହିଁ ପ୍ରାଣସ୍ରୋତ । କବି ଜଗନ୍ନାଥ ଦାସ କୃଷ୍ଣ ଚରିତ 'ଭାଗବତ'ରେ ମଧ୍ୟ ବହୁସ୍ଥଳରେ କୃଷ୍ଣ ସ୍ଥାନରେ ଜଗନ୍ନାଥଙ୍କର ନାମୋଲ୍ଲେଖ କରିଛନ୍ତି । ପଞ୍ଚସଖା ନିଜ ନିଜ ଆଧ୍ୟାତ୍ମିକ ଚିନ୍ତାଧାରାକୁ ସମାଜରେ ପ୍ରଚଳିତ କରିବା ଅଭିପ୍ରାୟରେ ସାହିତ୍ୟକୁ ହିଁ ପ୍ରକୃଷ୍ଟ ମାଧ୍ୟମ ରୂପେ ଗ୍ରହଣ କରିଥିଲେ ଏବଂ ଏହାର ଫଳରେ ଭକ୍ତି ସାହିତ୍ୟ ବିକଶିତ ହୋଇଥିଲା ।

ପଞ୍ଚସଖା ଯୁଗ ପରେ, ପ୍ରାକ୍ କାବ୍ୟଯୁଗରେ ଯେଉଁ କେତେକ ପ୍ରତିଭାଶାଳୀ କବିଙ୍କର ଅଭ୍ୟୁଦୟ ଘଟିଥିଲା, ସେମାନଙ୍କ ମଧ୍ୟରେ ରାମବିଭା ଓ କଳ୍ପଲତାର କବି ଅର୍ଜୁନ ଦାସ, ରହସ୍ୟ ମଞ୍ଜରୀର କବି ଦେବଦୁର୍ଲ୍ଲଭ, ଉଷାଭିଳାଷ ପ୍ରଣେତା ଶିଶୁଶଙ୍କର, ପରିମଳା କାବ୍ୟର ରଚୟିତା ନରସିଂହ ସେଣ ଏବଂ 'ରୁକ୍ମିଣୀ ବିଭା'ର କବି କାର୍ତ୍ତିକ ଦାସଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଏମାନଙ୍କ ସୃଷ୍ଟିସମ୍ଭାର କାବ୍ୟଯୁଗ ପାଇଁ ନିଃସନ୍ଦେହରେ କ୍ଷେତ୍ର ପ୍ରସ୍ତୁତ କରିଥିଲା ।

କାବ୍ୟଯୁଗ କାବ୍ୟର ଯୁଗ । ଆଳଙ୍କାରିକତା ଏହି ଯୁଗର ଅନ୍ୟତମ ବୈଶିଷ୍ଟ୍ୟ ବିଭବ ହୋଇଥିବାରୁ ଅନେକେ ଏହି ଯୁଗକୁ ଆଳଙ୍କାରିକ ଯୁଗ ବୋଲି ମଧ୍ୟ କହିଥା'ନ୍ତି । ପୁଣି କବି ଉପେନ୍ଦ୍ର ଭଞ୍ଜ ଏହି ଯୁଗର ସର୍ବଶ୍ରେଷ୍ଠ ପ୍ରତିଭା ହୋଇଥିବାରୁ ଇତିହାସର ପୃଷ୍ଠାରେ ଏହି ଯୁଗ ଭଞ୍ଜଯୁଗ ନାମରେ ମଧ୍ୟ ପରିଚିତ । କାଳ୍ପନିକତା, ଶୃଙ୍ଗାରିକତା, ସାଂଗୀତିକତା ମଧ୍ୟ ଏହି ଯୁଗର ଗୋଟିଏ ଗୋଟିଏ ବୈଶିଷ୍ଟ୍ୟ ଦିଗ । ପୌରାଣିକ କଥାବସ୍ତୁର କାବ୍ୟରୂପ ଏହି ଯୁଗର ସାହିତ୍ୟରେ ଦେଖିବାକୁ ମିଳେ । ଯଦିଓ ସମକାଳୀନ ଧର୍ମଧାରା କାବ୍ୟଯୁଗରେ ବହୁ କାବ୍ୟ କବିତାର କଥାବସ୍ତୁକୁ ନିୟନ୍ତ୍ରିତ କରିଛି, ତଥାପି ରସର ଆବେଦନହିଁ କାବ୍ୟର ମୁଖ୍ୟ ଆକର୍ଷଣ ରୂପେ ପ୍ରତିଭାତ ହୋଇଛି । କାଳ୍ପନିକ କାବ୍ୟ ରଚନାରେ ମଧ୍ୟ ଏହି ଯୁଗର କବିମାନେ ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି । ଶବ୍ଦ ଓ ଅର୍ଥରେ ହିଁ କାବ୍ୟର ସୌନ୍ଦର୍ଯ୍ୟ ବିଦ୍ୟମାନ ବୋଲି ଆଚାର୍ଯ୍ୟ ଦଣ୍ଡୀ କହିଥିଲେ । କାବ୍ୟଯୁଗର କବିଗଣ ନିଜ ସୃଷ୍ଟିରେ ଏହା ପ୍ରଦର୍ଶନ କରିଯାଇଛନ୍ତି । ରସର ପରିବେଷଣରେ ଏହି ସମୟର କବିମାନେ ବାଞ୍ଛିତ ପ୍ରୟାସ କରିଥିଲେ ହେଁ, ବହୁସୃଷ୍ଟିରେ କାବ୍ୟଲଳନା ଅଳଙ୍କାରରେ ଭାରାକ୍ରାନ୍ତା ହୋଇପଡ଼ିଛନ୍ତି । ଫଳରେ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତା ବିନା ଏହି ଯୁଗର ବହୁକାବ୍ୟ କବିତାର ରସାସ୍ୱାଦନ ସମ୍ଭବ ନୁହେଁ । କାବ୍ୟଯୁଗର ପ୍ରବୃତ୍ତିର ଅନୁଧ୍ୟାନ କାଳରେ ଆମର ମନେ ପଡ଼ନ୍ତି A.B. Keath, ସେ ତାଙ୍କର 'A History of Sanskrit literature'

Digitized by srujanika@gmail.com

ଛନ୍ଦର ମୁଖବନ୍ଧରେ ଯଥାର୍ଥରେ ଲେଖିଛନ୍ତି…"The great poets of India wrote for the audiences of experts; theywere masters of the learning of their day, long trained in the use of languages and they aimed to please by subtlety of effect". ଉପରୋକ୍ତ ଦୃଷ୍ଟିରେ କାବ୍ୟଯୁଗର ସୃଷ୍ଟି ପରମ ଆକର୍ଷଣୀୟ ଏବଂ ସାଧାରଣ ଜନତା ଏହାର ସାଂଗୀତିକତାରେ ଅଭିଭୂତ । ସେଥିପାଇଁ କବି ରାଧାନାଥ କାର୍ଯ୍ୟଯୁଗର ଦୁଇ ବରେଣ୍ୟ ସ୍ରଷ୍ଟା ଭଞ୍ଜ ଓ କବିସୂର୍ଯ୍ୟଙ୍କ ସମ୍ପର୍କରେ ଲେଖିଛନ୍ତି—

"ଶ୍ରାବ୍ୟବାନ ଦେଲେ ବାଣୀଙ୍କ କୁମାର
କବି ବଳଦେବ ଭଞ୍ଜ ବୀରବର ।"

କାବ୍ୟଯୁଗ ବହୁ ବରେଣ୍ୟ ପ୍ରତିଭାଙ୍କର ସାଧନାରେ ମହିମାମଣ୍ଡିତ । ଏମାନଙ୍କ ମଧ୍ୟରେ ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଅଭିମନ୍ୟୁ, ଲୋକନାଥ, ବିଦ୍ୟାଧର, ବିଶ୍ୱନାଥ ଖୁଣ୍ଟିଆ, ପୁରୁଷୋତ୍ତମ ଦାସ, ବ୍ରଜନାଥ ବଡ଼ଜେନା, ଭକ୍ତଚରଣ, ଗୋପାଳକୃଷ୍ଣ ପ୍ରଭୃତିଙ୍କର ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଆ ସାହିତ୍ୟରେ ନୂତନ ପର୍ଯ୍ୟାୟର ସୂତ୍ରପାତ ହେଲା । ଗତ ଶତାବ୍ଦୀ ସମଗ୍ର ଭାରତରେ ନବଜାଗରଣର ସନ୍ଦେଶ ଆଣିଥିଲା । ଐତିହାସିକ ଯଦୁନାଥ ସରକାରଙ୍କ ଭାଷାରେ ଅଷ୍ଟାଦଶ ଶତାବ୍ଦୀରେ ଇଉରୋପରେ ଯେପରି ନବଜାଗରଣ ଦେଖାଦେଇଥିଲା, ଊନବିଂଶ ଶତାବ୍ଦୀରେ ସମଗ୍ର ଭାରତରେ ସେହିପରି ରେନେସାର ସୂତ୍ରପାତ ହୋଇଥିଲା । ବଙ୍ଗଦେଶ ଅପେକ୍ଷା ଉତ୍କଳରେ ଏହି ନବଜାଗରଣ ବିଳମ୍ବିତ ହୋଇଥିଲା । କାରଣ ଉତ୍କଳରେ ଇଂରେଜୀ ଶିକ୍ଷାର ପ୍ରସାର ବିଳମ୍ବରେ ଘଟିଥିଲା ଏହି ଗତ ଶତାବ୍ଦୀରେହିଁ ଉତ୍କଳରେ ଓଡ଼ିଆ ପତ୍ରପତ୍ରିକାର ପ୍ରକାଶ ସଙ୍ଗେ ସଙ୍ଗେ ପାଶ୍ଚାତ୍ୟାନୁପ୍ରାଣିତ ଏକ ନୂତନ ସାହିତ୍ୟ ସହିତ ଏ ଦେଶର ଜନସାଧାରଣ ପରିଚିତ ହେଲେ । ନୂତନ ଧରଣର କାବ୍ୟ କବିତା ସହିତ ଓଡ଼ିଆରେ ପ୍ରବନ୍ଧ, ଉପନ୍ୟାସ, ଗଳ୍ପ ପ୍ରଭୃତି ସାହିତ୍ୟର ନୂତନ ଶିଳ୍ପ ରୂପ ସୃଷ୍ଟି ହୋଇଥିଲା । ପ୍ରାଚ୍ୟ-ପାଶ୍ଚାତ୍ୟ ଚିନ୍ତାଧାରାର ସମନ୍ୱୟ ପାଇଁ ନବଯୁଗର କାବ୍ୟଧାରାରେ କବି ରାଧାନାଥଙ୍କର ଐତିହାସିକ ପ୍ରଚେଷ୍ଟା ଅବିସ୍ମରଣୀୟ । କବି ନିତ୍ୟାନନ୍ଦ ମହାପାତ୍ରଙ୍କ ଭାଷାରେ 'ରାଧାନାଥଙ୍କ କାବ୍ୟର ଦେହ ଓଡ଼ିଆ, କିନ୍ତୁ ପ୍ରାଣ ବିଦେଶୀ ।" ସେଥିପାଇଁ କବି ତାଙ୍କ ସମକାଳୀନ ଉତ୍କଳରେ ଆକ୍ଷିପ୍ତ ହୋଇଥିଲେ; କିନ୍ତୁ ଓଡ଼ିଆ କାବ୍ୟଧାରାକୁ ବସ୍ତୁବିଧ ନୂତନ ବିଭବରେ ପ୍ରାଣବନ୍ତ କରିବା ନିମିତ୍ତ ଏବଂ ଯୁଗୋଚିତ ନୂତନ ଦୃଷ୍ଟିକୋଣ ଦେବା ସକାଶେ ତାଙ୍କର ତପସ୍ୟା ଚିରଦିନ ସ୍ମରଣୀୟ ହୋଇ ରହିବ । ସେ ସମୟରେ ପବିତ୍ର ଓ ସୁନ୍ଦର କାବ୍ୟ ଲେଖିବାପାଇଁ ଯେଉଁ ନୂତନ ଚେତନା ସୃଷ୍ଟି ହୋଇଥିଲା, ତାହାର ସୂଚନା କବି ଗଙ୍ଗାଧର ଓ କବି ନନ୍ଦକିଶୋରଙ୍କ ସୃଷ୍ଟି ସମ୍ପଦରେ ଦେଖିବାକୁ ମିଳେ । ନବଯୁଗରେ ବହୁ

Digitized by srujanika@gmail.com

ବରେଣ୍ୟ ସ୍ରଷ୍ଟା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାକୁ ପ୍ରୟାସ କରିଥିଲେ । ସେମାନଙ୍କ ମଧ୍ୟରେ ରାଧାନାଥ, ମଧୁସୂଦନ, ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର ପ୍ରଭୃତି କବିମାନଙ୍କର ନାମ ଉଲ୍ଲେଖଯୋଗ୍ୟ ।

ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଆ ସାହିତ୍ୟରେ ସତ୍ୟବାଦୀର ସାଧକଗଣ ନୂତନ ପ୍ରତିଶ୍ରୁତି ଓ ସମ୍ଭାବନାର ପ୍ରତୀକ ରୂପେ ଦେଖା ଦେଇଥିଲେ । ସେତେବେଳକୁ ଉତ୍କଳ ସମ୍ମିଳନୀ ଆନୁକୂଲ୍ୟରେ ଉତ୍କଳରେ ନବଜାଗରଣ କ୍ରମବର୍ଦ୍ଧିଷ୍ଣୁ ହୋଇ ସାରିଥିଲା ଏବଂ ମହାଭାରତୀୟ ଜାତୀୟତାବୋଧ କ୍ରମେ ବିକଶିତ ହେଉଥିଲା । ସତ୍ୟବାଦୀର କବିଗଣଙ୍କ ଲେଖାରେ ସମୟର ପ୍ରାଣସ୍ପନ୍ଦନ ସ୍ପନ୍ଦିତ ହୋଇଛି । ବିଭୂଭକ୍ତି, ପ୍ରକୃତିପ୍ରୀଣତା, ମାନବିକତା ପ୍ରଭୃତି ବିଭିନ୍ନ ବିଷୟକୁ କେନ୍ଦ୍ରକରି ଏହି ସମୟରେ ବହୁ ଉଚ୍ଚାଙ୍ଗ ସୃଷ୍ଟି ସମ୍ଭବ ହୋଇଥିଲେହେଁ, ଜାତୀୟତାବୋଧହିଁ ସତ୍ୟବାଦୀ ଆନ୍ଦୋଳନର ଅଭିପ୍ରେରଣା । ସ୍ୱଦେଶ ଏବଂ ସ୍ୱଦେଶୀୟ ସଂସ୍କୃତି, ଏ ଦେଶର ଇତିହାସ ଓ କିମ୍ବଦନ୍ତୀ ପ୍ରତି ଗଭୀର ମମତା, କବି ଗୋପବନ୍ଧୁ, ନୀଳକଣ୍ଠ ଓ ଗୋଦାବରୀଶଙ୍କ ସାହିତ୍ୟର ମହନୀୟ ବିଭବ । ଉଗ୍ର ଜାତୀୟତାବୋଧ ଏବଂ ସଂସ୍କାର ଲିପ୍ସା ସତ୍ୟବାଦୀ ଆନ୍ଦୋଳନର ଦୁଇଟି ବିଶିଷ୍ଟ ଦିଗ ।

ସତ୍ୟବାଦୀ ଆନ୍ଦୋଳନ ପରେ ସବୁଜ ଆନ୍ଦୋଳନ ଓଡ଼ିଆ କାବ୍ୟଧାରାର ଋଜୁଗତି ପରିବର୍ତ୍ତିତ କରିଛି । ସବୁଜ କବି କାଳିନ୍ଦୀଚରଣଙ୍କ ଭାଷାରେ "ସବୁଜ କଳ୍ପନାର ପ୍ରାରମ୍ଭ-କାଳ, ବିଂଶ ଶତକର ରକ୍ତସ୍ନାତ ପ୍ରଥମ ମହାଯୁଦ୍ଧୋତ୍ତର ପୁନର୍ଗଠନର ଯୁଗ—ପୃଥିବୀରେ ନବଚେତନାର ଜାଗରଣ । ବିଦୀର୍ଣ୍ଣ ଧରାପୃଷ୍ଠରେ ମିଳନର ବ୍ୟାକୁଳତା ଦେଖାଦେଇଥାଏ, ପୃଥିବୀ ବ୍ୟାପୀ ରାଜନୀତି, ଅର୍ଥନୀତି, ଧର୍ମ, ସାହିତ୍ୟ ଆଦି ସମାଜର ବିଭିନ୍ନ ବିକାଶ କ୍ଷେତ୍ରରେ ଏକ ନୂତନ ମୂଲ୍ୟ ଓ ନୂତନ ଅର୍ଥ ନିରୂପଣର ସମୟ ଆସିଥାଏ ...... ମାନବର ଚିନ୍ତା ଓ ସାହସର ଅପୂର୍ବ ଦୀପ୍ତି ଆଗରେ ଜଗତର ଦୃଷ୍ଟି ଝଲସି ପଡୁଥାଏ । ବିଶ୍ୱ ମସ୍ତିଷ୍କରେ ବହି ଚାଲିଥାଏ ଏକ ପ୍ରଳୟଙ୍କର ଆଶା ଆକାଂକ୍ଷାର ତୋଫାନ । ସେଇ ତୋଫାନ ବେଗରେ କେଉଁ ଅଲକ୍ଷିତ ଅଜ୍ଞାନ ଆକାଶର ଅଦୃଶ୍ୟ ଦିଗ୍‌ବଳୟ ତଳେ ଭାସି ଯାଉଥାଏ ନିରୁଦ୍ଦେଶ୍ୟ ନିଶ୍ଚିନ୍ତ ଏକ ସବୁଜ ପକ୍ଷୀ, ଶୁଣାଇ ଦେଇ ତାହାର କ୍ଷଣିକ କାକଳି 'ଶୁଦ୍ଧୋବାଚ' । ଭାରତୀୟ ଆତ୍ମାର ଛନ୍ଦ ବାଜି ଉଠୁଥାଏ ରବୀନ୍ଦ୍ର, ଇକବାଲ୍, ପ୍ରେମଚନ୍ଦଙ୍କ କଣ୍ଠରେ ଏବଂ ଗାନ୍ଧୀ, ଚିତ୍ତରଞ୍ଜନ ଓ ମୋତିଲାଲଙ୍କ କର୍ମରେ ତାହାର ପ୍ରତିଧ୍ୱନି । ତରୁଣ ଚକ୍ଷୁରେ ଫୁଟିଥାଏ ନବ ସୂର୍ଯ୍ୟୋଦୟର ଅରୁଣ ଆଭା; ସତ୍ୟବାଦୀର ତପସ୍ୟାଜନା କୁଞ୍ଜରେ ଉତ୍କଳୀୟ ପ୍ରତିଭାର ନୂତନ ଆଲୋକ ଉଦ୍‌ଭାସିତ ହୋଇଥାଏ । ମଧୁସୂଦନ, ଗୋପବନ୍ଧୁ, ବିଶ୍ୱନାଥ, ବ୍ରଜସୁନ୍ଦର, ଗଙ୍ଗାଧର, ନନ୍ଦକିଶୋର, ଚିନ୍ତାମଣି, ପ୍ରମୁଖ ବରପୁତ୍ରମାନଙ୍କ ଉନ୍ନତ ଜୀବନାଦର୍ଶ ତରୁଣପ୍ରାଣକୁ ଉଦ୍‌ବୁଦ୍ଧ କରୁଥାଏ । ଏହିଭଳି ଏକ ପରିବେଶ ମଧ୍ୟରେ ସବୁଜର ଶୁଭଶଙ୍ଖ ବାଜି ଉଠିଲା ।" (ସବୁଜ ସ୍ୱପ୍ନ- ଉତ୍କଳ ସାହିତ୍ୟ, ନୂଆପଥ, ଦ୍ୱିତୀୟ ଖଣ୍ଡ, ଷଷ୍ଠ ସଂଖ୍ୟା) । ସବୁଜ ସାହିତ୍ୟ ସମିତିର ସଭ୍ୟଗଣ (କାଳିନ୍ଦୀଚରଣ, ଅନ୍ନଦାଶଙ୍କର, ହରିହର,

Digitized by srujanika@gmail.com

ବୈକୁଣ୍ଠନାଥ, ଶରତ୍‌ଚନ୍ଦ୍ର) ଭାରତୀୟର ଆତ୍ମବିଶ୍ଳେଷଣ ଓ ମୁଗ୍‌ଧ ଭାବାବେଶକୁ ସାହିତ୍ୟରେ ଯେପରି ରୂପାୟିତ କରିଛନ୍ତି, ନୂତନ ଚିନ୍ତାଧାରାର ରୂପାୟନ ପାଇଁ ସେହିଭଳି ଆଗ୍ରହ ପ୍ରକାଶ କରିଛନ୍ତି ।

ପ୍ରଥମ ମହାଯୁଦ୍ଧର ପରବର୍ତ୍ତୀ ସାହିତ୍ୟରେ ଗୋଟିଏ ଦିଗରୁ ଆମେ ପାଉଁ ବାସ୍ତବତା ବିମୁଖ ସ୍ୱପ୍ନଜୀବୀ ପଦ୍ମଭୂମିମାନଙ୍କୁ ଏବଂ ଅନ୍ୟଦିଗରେ ବାସ୍ତବତାର ସମ୍ମୁଖୀନ ହୋଇ ପ୍ରତିକୂଳତା ଭିତରେ ମଧ୍ୟ ସଂଗ୍ରାମୀ ମନୋଭାବସମ୍ପନ୍ନ କବିଙ୍କୁ, ଯେଉଁମାନେ ଆଗାମୀ ଯୁଗପାଇଁ ଆଗ୍ନେୟ ଶପଥର ପ୍ରତୀକ ରୂପେ ଆତ୍ମପ୍ରକାଶ କରିଛନ୍ତି । ସାହିତ୍ୟରେ ଯୁଗେ ଯୁଗେ ବିଭିନ୍ନ ଚେତନାର ରସସିକ୍ତ ରୂପ ଫୁଟି ଉଠେ । ଗାନ୍ଧୀବାଦ ଓ ମାର୍କସ୍‌ବାଦ ଏହି ସମୟର କବିତାକୁ ବିଭିନ୍ନ ଭାବରେ ଉପଜୀବ୍ୟ ଯୋଗାଇଛି । ପ୍ରଥମ ମହାଯୁଦ୍ଧୋତ୍ତର ଓଡ଼ିଆ କାବ୍ୟଧାରାରେ କବି କାଳିନ୍ଦୀଚରଣ ପରେ ପରେ ସ୍ୱପ୍ନପୁରୀରୁ ଓହ୍ଲାଇ ଆସି ବାସ୍ତବତାର ସମ୍ମୁଖୀନ ହୋଇ ପ୍ରଗତିଶୀଳ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଛନ୍ତି । ମାର୍କସ୍‌ବାଦୀ ଚେତନାର ରୂପକାର ରୂପେ ଏହି ସମୟରେ ସଚ୍ଚିଦାନନ୍ଦ ରାଉତରାୟ ଓ ଅନନ୍ତ ପଟ୍ଟନାୟକଙ୍କ ଭଳି ଅନନ୍ୟ ସାଧାରଣ ପ୍ରତିଭା ସମ୍ପନ୍ନ କବିମାନେ ଯଶସ୍ୱୀ ହୋଇଛନ୍ତି । ଭଗବତୀ ଚରଣ ପାଣିଗ୍ରାହୀଙ୍କ 'ଆଧୁନିକ' ପତ୍ରିକା ପ୍ରଗତିଶୀଳ ସାହିତ୍ୟର ସତେ ଅବା ଥିଲା ମୁଖପତ୍ର । ସେ କି ଏକଦା କହିଥିଲେ...'' The aim of the new world is to liberate the working people from the ancient superstitions & prejudies of race, nation, class & religion & to create a world wide fraternal society, every member of which will work according to his ability & receive according to his needs.'' ପ୍ରଗତିଶୀଳ କବି ଗଣଙ୍କର କୃତିରେ ଏହି ଅଭୀପ୍ସା ପ୍ରତିଫଳିତ ହୋଇଛି ।

ପ୍ରଥମ ମହାଯୁଦ୍ଧୋତ୍ତର ଓଡ଼ିଆ କାବ୍ୟଧାରାର ଅନ୍ୟ କେତୋଟି ବଳିଷ୍ଠ ପ୍ରତିଭା ହେଉଛନ୍ତି କବି ମାୟାଧର ମାନସିଂହ, ଗୋଦାବରୀଶ ମହାପାତ୍ର, ରାଧାମୋହନ ଗଡ଼ନାୟକ, କୃଷ୍ଣଚନ୍ଦ୍ର ଦାସ ପ୍ରଭୃତି କବିଗଣ । ଏମାନଙ୍କ ସାହିତ୍ୟ ସାଧନାର, ତପସ୍ୟାର । ସ୍ୱାଧୀନତାର ପରବର୍ତ୍ତୀ କାଳରେ ଓଡ଼ିଆ କାବ୍ୟଧାରାର ଆଙ୍ଗିକ ଓ ଆତ୍ମିକ ସ୍ତରମାନରେ ବର୍ଣ୍ଣବୈଚିତ୍ର୍ୟ ଦେଖିବାକୁ ମିଳେ । ଏହି ସମୟରେ ଚିତ୍ରକଳ୍ପ, ମିଥ୍, ପ୍ରତୀକର ବ୍ୟାପକ ବ୍ୟବହାର ପରିଦୃଷ୍ଟ ହୁଏ । ଆଧୁନିକ କବିତା ସମ୍ପର୍କରେ ଆଲୋଚନା କଲାବେଳେ ଆଧୁନିକ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ କେତୋଟି ଉକ୍ତି ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ସେ ଲେଖିଛନ୍ତି—''ଆଧୁନିକ କବିତା ଅନେକ କିଛି ହରାଇଛି । ସମସ୍ତ ହରାଇ ମରୁଭୂମିରେ ବାଟ ଖୋଜି ବୁଲୁଚି । ଏ ମରୁଭୂମି କିଛି କବିତାର ନିଜସ୍ୱ ସୃଷ୍ଟି ନୁହେଁ । ସେ ସ୍ୱାକୁ ତଆର କରିନାହିଁ, କି ନିମନ୍ତ୍ରଣ କରି ଆଣି ନାହିଁ । ଏହା ହେଉଚି ତାର ବାସ୍ତବତା ଓ

Digitized by srujanika@gmail.com

ପରିବେଶ, ତାର ପରିସ୍ଥିତି । ଏହି ଅସହ୍ୟ ପରିସ୍ଥିତି ଭିତରେ ସେ କିନ୍ତୁ ବିଶ୍ୱ ରହିଯାଇଛି—ବିଶ୍ୱ ରହିବାର ଅସ୍ପର୍ଦ୍ଧା ସାହସ ଦେଖାଇଛି । ସେଇ ମରୁଭୂମିକୁ ଜୀବନ୍ତ କରି ଫୁଟାଇବା ଯେମିତି ଆଜି ତାର ମସ୍ତବଡ଼ କାମ ! ସେଇ ଧୂଧୂ ବାଲିବନ୍ତରେ ନୂତନ ଶାଳ ଶବ୍ଦକର ସଂଗୀତ ଦେବା—ନୂଆ ଜୀବନର ମାନଚିତ୍ର ଫୁଟାଇବା ମଧ୍ୟ ତାଙ୍କ ସେହିପରି ବଡ଼ କର୍ତ୍ତବ୍ୟ । ପ୍ରଥମ କାମଟି ସୁନ୍ଦର ଭାବରେ କରିପାରିଛନ୍ତି ଏଲିୟଟ୍ । ସେଇ ମରୁଭୂମିର ଧୂଧୂ ମରୀଚିକା, ତାର ମାଂସିଳ ଆକର୍ଷଣ ସବୁ ଯେମିତି ଅମର ହୋଇ ଫୁଟି ଉଠିଛି ତାଙ୍କ କାବ୍ୟର ଯାଦୁଦଣ୍ଡ ସ୍ପର୍ଶରେ, ସବୁ ଯେପରି ଜୀବନ ପାଇ କଥା କହି ଉଠିଛି ତାଙ୍କ କାବ୍ୟର କେତେ ଏକର ଶୁଷ୍କ ପତିତ ଭୂଇଁ ଉପରେ ।"

ସେ ପୁଣି ଲେଖିଛନ୍ତି—"ଆଧୁନିକ କବିତା ସମ୍ବନ୍ଧରେ ନିରାଶ ହେବାର କିଛି ନାହିଁ । ଏ କବିତା ଅନେକ କିଛି ହରାଇଛି, ସନ୍ଦେହ ନାହିଁ । ହରାଇଛି ଛନ୍ଦ ଓ ଭାଷାର ମସୃଣ ସୁଷମା—ଅଳଙ୍କାରର ରସାଳ ସମର୍ଥନ—ବିଶ୍ୱାସର ଗଭୀର ଦ୍ୟୋତନା—ଆଉ ସ୍ୱପ୍ନର ଅନେକ ବିଚିତ୍ରମୟତା, କିନ୍ତୁ ପାଇଛି ଜୀବନର ସମସ୍ତ ପରିଚୟ ଓ ନୂତନ ଦିଗନ୍ତର ସନ୍ଧାନ । ସମାଜ ଓ ଜୀବନରେ ଯାହା କିଛି ଅବହେଳିତ, ଅଂତଜ୍ୟ, ଯାହାକିଛି ଅବହେଳିତ ହୋଇ ପଡ଼ି ରହିଥିଲା, ସେଇ ଅବହେଳିତ ଭସ୍ମସ୍ତୂପ ଭିତରୁ ସେ ଯେପରି ଖୋଜି ପାଇଛି କାବ୍ୟର ଅମୂଲ୍ୟ ସମ୍ପଦ ।

'କବିତାଶ୍ରୀ'ରେ ପ୍ରାଚୀନ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ବିଭିନ୍ନ ସମୟର କବିଗଣଙ୍କର କେତେକ ନିର୍ବାଚିତ କୃତି ସଙ୍କଳିତ ହୋଇଛି । ଏଥିରୁ ବିଭିନ୍ନ ସମୟର କାବ୍ୟଧାରାର ଗତି ଓ ପ୍ରକୃତି ସମ୍ପର୍କରେ ଏକ ସୁସ୍ପଷ୍ଟ ଅବଧାରଣା ସହଜ ହେବ । ଯେଉଁ ସ୍ୱର୍ଗତ କବିମାନଙ୍କର କୃତି ଏହାର କଳେବର ମଣ୍ଡନ କରିଛି, ସେମାନଙ୍କ ଉଦ୍ଦେଶ୍ୟରେ ପ୍ରାଣର ଭକ୍ତିପୁଷ୍ପ ଅର୍ପଣ କରୁଛି । ସାମ୍ପ୍ରତିକ କାଳର ଯେଉଁ କବିଙ୍କ କବିତା ଏଥିରେ ସନ୍ନିବିଷ୍ଟ ହୋଇଛି, ସେମାନେ ସମସ୍ତେ ଓଡ଼ିଆ ସାହିତ୍ୟରେ ସୁପରିଚିତ । ମୋତେ ସେମାନେ ତାଙ୍କ ସୃଷ୍ଟି ଏହି ସଙ୍କଳନରେ ସନ୍ନିବିଷ୍ଟ କରିବାକୁ ସହୃଦୟ ସ୍ୱୀକୃତି ପ୍ରଦାନ କରିଥିବାରୁ ସେମାନଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

'ଜାତୀୟ ମହଲର'ର ପ୍ରତିଷ୍ଠାତା ଶ୍ରୀଯୁକ୍ତ ଜଗଦୀଶ ଖଣ୍ଡାୟୀ ଏହି ସଙ୍କଳନ ପ୍ରକାଶ କରିଥିବାରୁ ତାଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ବିନୟାବନତ
ଗଙ୍ଗାଧର ବଳ
୨୭-୧-୮୩

Digitized by srujanika@gmail.com

# ସୂଚୀ



Digitized by srujanika@gmail.com

| ବିଷୟ | | ପୃଷ୍ଠା |
|---|---|---|
|  |



Digitized by srujanika@gmail.com

# ଏକଲବ୍ୟର ଅସ୍ତ୍ରଶିକ୍ଷା

ସାରଳା ଦାସ

[ ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ମହାକବି ସାରଳା ଦାସଙ୍କ ପ୍ରତିଭାର ମହାନ୍ତର ନାହିଁ । ସେ ଥିଲେ କପିଳେନ୍ଦ୍ର ଦେବ (୧୪୩୫-୧୪୬୭)ଙ୍କ ସମକାଳୀନ । ପ୍ରସିଦ୍ଧ ସାରଳାପୀଠ ଝଙ୍କଡ଼ ପ୍ରଗନାର ଅନ୍ତର୍ଗତ କନକପୁର ଗ୍ରାମରେ ତାଙ୍କର ଜନ୍ମ । 'ମହାଭାରତ' 'ବିଲଙ୍କା ରାମାୟଣ', 'ଚଣ୍ଡୀ ପୁରାଣ' ପ୍ରଭୃତି ତାଙ୍କର ପ୍ରସିଦ୍ଧ ରଚନା । ପୁରାଣର ପୃଷ୍ଠଭୂମିରେ ତାଙ୍କ ସାହିତ୍ୟରେ ରୂପ ପାଇଛି ସମକାଳୀନ ଓଡ଼ିଶାର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଚିତ୍ର । 'ଏକଲବ୍ୟର ଅସ୍ତ୍ରଶିକ୍ଷା' ସାରଳା ମହାଭାରତର ଆଦିପର୍ବରୁ ସଂଗୃହୀତ । ]

ଅଗସ୍ତି ବୋଇଲେ ଶୁଣ ହରି ସୁତ ମନୁ ।
ଜାର ନାମେ କିରାତର ଅନପତିର ତନୁ ।୧।
ଗଣ୍ଡା ଦୁଇଚୋଟା ଘେନିଲା ଅତି ଯତ୍ନେ ।
ବାରୁଣାବନ୍ତକର ଆସଇ ତୋଷମନେ ।୨।
ମଥାପେଣ ମଞ୍ଜୁର ଝାଲି କଣ୍ଠେଣ ଗୁଞ୍ଜମାଳ ।
ଲୋହିତବର୍ଣ୍ଣ ନେତ୍ର ଅଙ୍ଗେଣ ରଙ୍ଗଧୂଳି ।୩।
ଧାମଣ କାଠର ଧନୁ ଜଣ୍ଟା ବାଉଁଶର ଗୁଣ ।
ଡାଳି ଆଭରଣ ଫିଶକ ନାରାଜ ଦୁଇ ଖୋଣ ।୪।
ସେପନ ସମୟେ ଅଜପତି କିରାତର ତନୟେ ।
ଦ୍ରୋଣଙ୍କ ଦର୍ଶନ କଲା ବାରୁଣାବନ୍ତ ଆଖଡ଼ାୟେ ।୫।
ଗଣ୍ଡା ଦେଖିଣ ସାନନ୍ଦ ହୋଇଲେ ଦ୍ରୋଣଗୁରୁ ।
ବିଦ୍ୟାପୂର୍ଣ ହୋଇବ ତୁମ୍ଭେ ଆଗ୍ୟାଂ ଥିର କରୁ ।୬।
ଯୁଧିଷ୍ଠି ବୋଇଲେ ଗୁରୁ ଥାଉ ସେ କିରାତ ।
ବନର ଲୋକ ସେହ୍ନାରେ କାର୍ଯ୍ୟ ଅଛଇ ବହୁତ ।୭।
ଶୁଣି କୋପକଲା ଧୃତରାଷ୍ଟ୍ରର ବଳା ।
ରାଗେଣ ବୋଇଲାରେ କିରାତ ସେଥୁ ବନ୍ଧନ ହୋଇ ପଳା ।୮।
ଅର୍ଜୁନ ବୋଇଲା ସେ ନୋହଇ ହେମନ୍ତ
ବନଚର ଲୋକ ସେହ୍ନାରେ କାର୍ଯ୍ୟ ଅଛଇ ବହୁତ ।୯।

Digitized by srujanika@gmail.com

ଗଣ୍ଡା ଭଲ୍ଲ ମେଷ ଗ୍ରାମ୍ୟ ଜନ୍ତୁ ଯେତେ ।
ଭ୍ରମର ଆଦି କରି ମାଇଥିବା ବାଟରେ ।
ଆଖ୍ୟୋଳ କରି ଶରୀର ନେଲେ ନେଉଁଥେ ।
ଦୁର୍ଯ୍ୟୋଧନ ବୋଇଲେ କର୍ମ ଯେତେ ଭଣ୍ଡାର ପ୍ରକାରେଣେ । ୧୧ ।
ଦୁଃଶାସନଙ୍କୁ ବୋଇଲେରେ ନେଇ କେଣ ଧର ।
ଦ୍ରବ୍ୟ ସମେତ ଗୁଣ୍ଡିଆ ଯେଉଁ ଅନେକ ଶାସ୍ତ୍ର ଗଡ଼ ଦିନା । ୧୨ ।
ଶୁଣିଣ ଦୁଃଶାସନ ଯେମଣ ଯାହା ଯୋଗେ ।
ଯୋଜନେକ ଅନ୍ତରେ ନେଇ ଗୁଣ୍ଡିଲା ପରବତାପେ । ୧୩ ।
ସେ ଜାଗ କିଗତ ଅନେକ କୋଷ କଳ ।
ସେହୁ ଆଖଣ୍ଡଳଙ୍କୁ ଆପଣା ପକ୍ଷ ଙ୍କ ବୋଲି ବୃକ୍ଷକୁ କଟାଇଲ । ୧୪ ।
ଆପଣା ପକ୍ଷ ର ଦ୍ୱାରେ ଭିଆଇଲ ଆଖଡ଼ା ।
ଦ୍ୱାଦଶ ଯୋଜନେ ଥାଇ ସାଧଇ ମହାଗଗ୍ର । ୧୫ ।
ଦ୍ରୋଣ ଆଜ ଦାରୁଣାବନ ଆଖଡ଼ାକୁ ଗୁଡ଼ି ।
ଦ୍ୱାଦଶ ଯୋଜନେ ଥାଇ ବିଦ୍ୟା ସାଧଇ ସେହୁ । ୧୬ ।
ଦେଖ ହୋ ମହିମା ପ୍ରତାପ ଶବର ।
ଦ୍ୱାଦଶ ଯୋଜନେ ଥାଇ ସାଧଇ କିଗତ ଜାଗ । ୧୭ ।
ଯେଉଁଣ ପାଆ କର ଯାଆନ୍ତି କଉରବେ ।
ସେହୁମତେ ସାଧଇ ଧାମଇ ସର୍ବଦେ ସମ୍ଭବେ । ୧୮ ।
ସେହୁ ଗତ ଥାଇ ଗୁଡ଼ି ସାଧଇ ସର୍ବ ବିଦ୍ୟା ।
ସମସ୍ତ ଶିଖିଲ ସେ କ୍ଷତ୍ରିଙ୍କ ମହାସିଦ୍ଧା । ୧୯ ।
ତାର ନାମେଣ ଯେ ତାହାର ପ୍ରିୟବତୀ ।
ସେ କିରାତଙ୍କୁ ବୋଇଲ ବମୂକ୍ଷ କରଣ ମତ । ୨୦ ।
ଅମ୍ଭେ ବନଚର ଲୋକ ବନସ୍ଥ ଜାତ ଆହାର ।
ମୃଗୟା ନ ଯାଇ ଧାଇଁ ଧାଇଁ କର୍ମା ମର । ୨୧ ।
ଜାଗ ବୋଇଲ ଲୋ ଶୁଣସି ସଙ୍ଘାତ ।
ଜାଲେ ଜାଣି ସିନା ସ୍ୱେଶ୍ୱର ଉଦନ୍ତ । ୨୨ ।
ଶବରୀ ବୋଇଲ ମୋ କିସ କାମ ବୋଲ ।
କେମନ୍ତ ପ୍ରକୃତ ତ ତୋହର ବୁଝଁ ତ ନୁଆଣ । ୨୩ ।
ଅକାରଣେ ପାମର ଧାଇଁ ଧାଇଁ କମାଇ ମରୁ ।
ଯେହା ରୁ ସାଧୁଅଛୁ କେ ତୋହୋର ଗୁରୁ । ୨୪ ।
ଅଣଗୁରୁରେ ବିଦ୍ୟା ନୋହଇ ପ୍ରାପତ ।
ମୂର୍ଖ ପାମରଙ୍କ ତୁ ବନଚର ଜାତ । ୨୫ ।

Digitized by srujanika@gmail.com

ସ୍ୱଶଜାତ ବଚନ ମେ ପରମ ହୃଷ୍ଟ ଭଲ ।
ମାଟିର ଦ୍ରୋଣେଭ ସେ ନାରି ଶବର ଆପିଲା । ୨୬ ।
ମଥାରେ ଖୋସିଲାକ କୃଷ୍ଣ ଝୁନ ଚ୍ୟମର ।
ଗୁଞ୍ଜରି ମାଳ ପ୍ୟେକ ଝଞ୍ଜିଲ ଲଲାଟର । ୨୭ ।
ସର୍ଷ୍ଟି କର ବେଣ ଗୋଟି ନେନ ଚମ୍ଭ ନେଇ ଖଞ୍ଜି ।
ଗୁଞ୍ଜଟରବଟି ମାଳ ହୃଦେ ଲମ୍ବାଇଣ ଅଛୁ ପୁଞ୍ଜି ପୁଞ୍ଜି । ୨୮ ।
ଭୋଇଲା ମୃଗାର ଚର୍ମ ଆଭରଣ ବାମ ଅଙ୍ଗେ
କୋନ୍ଦ ନାଳ ହସ୍ତୁଷ୍ଟ ଲମ୍ବାଇଲା ଡାହାଣ କାନ୍ଧେ । ୨୯ ।
ଚନ୍ଦନ କାଠି ଘୋର ହୂନଦଣ୍ଡ ଦେଇ ଚଡା
ଧାମଣା କାଠର ଧନୁ ଧରିଣ ଅଛୁ ନାମ ହସ୍ତା । ୩୦ ।
ଡାହାଣ ଭୁଜରୁ ସେ ତର୍ଜନୀ ଅଙ୍ଗୁଷ୍ଠି
ଆଖଡ଼ାଶାଳକୁ ତାହା କରାଇଛୁ ଦୃଷ୍ଟି । ୩୧ ।
ସେ ମୂର୍ତ୍ତିକା ଦ୍ରୋଣର ଚରଣାରବିନ୍ଦେ ସେବ ।
ସାଧିଲା ସମସ୍ତ ବିଦ୍ୟା କରାତ ବିଷ୍ଟମ୍ଭୀ । ୩୨ ।



Digitized by srujanika@gmail.com

# କୋଇଲି କେଶବ ଯେ ମଥୁରାକୁ ଗଲା

ମାର୍କଣ୍ଡ ଦାସ

[ ସାରଳାଙ୍କ ସମସାମୟିକ ଭକ୍ତ କବିରେ ମାର୍କଣ୍ଡ ଦାସ ପଞ୍ଚଦଶ ଶତାବ୍ଦୀ ଓଡ଼ିଆ ସାହିତ୍ୟରେ ନିଜର କୃତିତ୍ବ ପ୍ରଦର୍ଶନ କରିଯାଇଛନ୍ତି । 'କେଶବ କୋଇଲି', ତାଙ୍କର ପ୍ରସିଦ୍ଧ ରଚନା । 'କେଶବ କୋଇଲି'ର ମୂର୍ଚ୍ଛନା ଏବେ ସୁଦ୍ଧା ଉତ୍କଳର ପୂରପଲ୍ଲୀରେ ଅନୁରଣିତ । ]

କୋଇଲି କେଶବ ଯେ ମଥୁରାକୁ ଗଲା ।
କାହା ବୋଲେ ଗଲା ପୁଅ ବାହୁଡ଼ି ନଇଲା ! ଲୋ କୋଇଲି ॥
କୋଇଲି ! ଖଣ୍ଡକ୍ଷୀର ଦେବ ମୁଁ କାହାକୁ
ଖାଇବାର ପୁଅ ଗଲା ମଥୁରାପୁରକୁ । ଲୋ କୋଇଲି ॥
କୋଇଲି ! ଗଲା ପୁଅ ବାହୁଡ଼ି ନଇଲା ।
ଗହନ ତ ବୃନ୍ଦାବନ ଶୋଭା ନ ପାଇଲା । ଲୋ କୋଇଲି ॥
କୋଇଲି ! ଘର ମୋର ନ ମଣନ୍ତି ନନ୍ଦ
ଘଟଣ ନ ଘଟେ ପୁର ନ ଥିଲେ ଗୋବିନ୍ଦ । ଲୋ କୋଇଲି ॥
କୋଇଲି ! ନନ୍ଦ ଦେହ ପାଷାଣେ ଗଢ଼ିଲା ।
ନୟନେ କଜ୍ଜ୍ୱଳ ଦେଇ ରଥେ ବସାଇଲା । ଲୋ କୋଇଲି ॥
କୋଇଲି ! ଚଳୁଥାଇ କଟିସୂତ୍ର ମେଖଳୀ ।
ଚକିତ ହୋଇଲେ ଶୁଣି ଗୋପପୁର ବାଳୀ । ଲୋ କୋଇଲି ॥
କୋଇଲି ! ଛୁଡ଼ି ପଡ଼େ ଅଇଲା ଅକ୍ରୂର ।
ଯାଆ ବୋଲି ଭଣ୍ଡି ନେଲା ବସାଇ ରଥର । ଲୋ କୋଇଲି ॥
କୋଇଲି ! ଝରଝର ଲୁହ ନ ରହିଲା ।
ଝଗଡ଼ା ସାରଣ କୃଷ୍ଣ ମଥୁରା ରହିଲା । ଲୋ କୋଇଲି ॥
କୋଇଲି ! ଞଣାକାଳେ ହର ମାଗେ ଗୃହ ।
ନୟନ ଟେକିଣ ତାକୁ ଚାହିଁଥାନ୍ତି ନନ୍ଦ ! ଲୋ କୋଇଲି ॥
କୋଇଲି ! ଟହ ଟହ ହସୁଥାନ୍ତି କୋଳେ ॥
ଟଳ ଟଳ ହେଉଥାନ୍ତି ଝୁଲିବାର ବେଳେ । ଲୋ କୋଇଲି ॥

Digitized by srujanika@gmail.com

କୋଇଲି ଠଣ ଯେ ସୁନ୍ଦର ବେଣୁ ପୋଏ ।
ଠକ ଭଣ୍ଡି ଗଲେ କୃଷ୍ଣ ନୋହିଲେ ଭେଟାଏ । ଲୋ କୋଇଲି ॥
କୋଇଲି ! ଡାଳରେ ରବଇ ଯେସ୍ନେ ଶାଖୀ
ଡାଳରତ୍ନ ଶୁଆ ପ୍ରାପ୍ତେ ସ୍ୱପ୍ନ ଥାନ୍ତି ହସି । ଲୋ କୋଇଲି ॥
କୋଇଲି ! ଉଲ୍ଲୁବନ୍ତ ମାଏ ଯଶୋବନ୍ତୀ ।
ଡାଁଳେ ହିଁସିରଇ ପୁତ୍ର 'ମୋର ଶିଶୁପତ୍ର । ଲୋ କୋଇଲି ॥
କୋଇଲି ! ଅନେକ ଧ୍ୱଂସିଲି ଗ୍ରସ୍ତ ବଂଶ ।
ଅଣହେଲା ଭଲ ଆପଣେ ଗଲି ନାଶ । ଲୋ କୋଇଲି ॥
କୋଇଲି ! ତନୁରେ ତା ଲେପଇ କୁଙ୍କୁମ ।
ତନଯ୍ୱ ଖେଳାଉଥାନ୍ତି ସ୍ୱଇ ବଳରାମ । ଲୋ କୋଇଲି ॥
କୋଇଲି ! ଅନନ୍ତଙ୍କି ଖୀରପାନ ଦେଲି ।
ଅବର କାଳକୁ ପୁତ୍ର ଦେଖି ନ ପାରିଲି । ଲୋ କୋଇଲି ॥
କୋଇଲି ! ଦଉଡ଼ିରେ ବାନ୍ଧିଲି ପୁତ୍ରକୁ ।
ଦାମୋଦର ରାଗେ ଗଲେ ମଥୁରାପୁରକୁ । ଲୋ କୋଇଲି ॥
କୋଇଲି ! ଧନ୍ୟ ସେହ୍ନ ଦଇବ କି ନାସ୍ତି
ଧର୍ମ ଥିଲି ପୁତ୍ର ଗୋଟି ନୋଇଲି ତାହାର । ଲୋ କୋଇଲି ॥
କୋଇଲି ! ନ ଶୋଭଇ ଗୋପପୁର ମୋର
ନାରାୟଣ ଗଲାଦିନୁ ମଥୁରା ନଗର । ଲୋ କୋଇଲି ॥
କୋଇଲି ! ପବିତ୍ର ପୁରୁଷ ମୋ ମାଧେଇ ।
ପବିତ୍ର ମୁଁ ହେଉଥିଲି କୃଷ୍ଣମୁଖ ଚାହିଁ । ଲୋ କୋଇଲି ॥
କୋଇଲି ! ଫଳିବାକୁ ନାହିଁ ମୋର ଆଶା ।
ଫଳିବାର ଫଳ ଗଲା ବସୁଦେବ ପାଶ । ଲୋ କୋଇଲି ॥
କୋଇଲି ! ବହୁତ ସହିଲି ତାଙ୍କ ଅଳି ।
ବଢ଼ାଇ ଶରଧା ସ୍ୱର୍ଙ୍ଗି ଗଲେ ବନମାଳୀ । ଲୋ କୋଇଲି ॥
କୋଇଲି ! ଭଣ୍ଡି ମୋତେ ଗଲେ ବେଣୁ ପୋଏ ।
ଖାଇ ତାଙ୍କ ବଳରାମ ନଇଲେ ବେଢ଼ାଏ । ଲୋ କୋଇଲି ॥
କୋଇଲି ! ରତ୍ନ, ବସ୍ତ୍ର ଅଳଙ୍କାର ମାନ ।
ରାମକୃଷ୍ଣ ଶ୍ରୀଅଙ୍ଗକୁ ଦିଶେ ଶୋଭାବନ । ଲୋ କୋଇଲି ॥
କୋଇଲି ! ଲକ୍ଷ୍ମୀବନ୍ତ ଅଟେ ନାରାୟଣ ।
ଲଲାଟରେ ନାମ ଦେଲେ ଶ୍ରୀଗର୍ଗ ବ୍ରାହ୍ମଣ । ଲୋ କୋଇଲି ॥
କୋଇଲି ! ବୃନ୍ଦାବନ ନ ଶୋଭଇ ମୋର ।
ବତ୍ସା କଏ ଚରାଇବ ଯମୁନାର ତୀର । ଲୋ କୋଇଲି ।

Digitized by srujanika@gmail.com

କୋଇଲି ! ଶ୍ରୀମନ୍ତ ପ୍ରବୁଦ୍ଧ ମୋ ମାଧୋଇ ।
ଶିଷ୍ୟରଙ୍କ ଗଣ୍ଡ ତନୁ ନନ୍ଦ ହେଲେ ବାଇ । ଲୋ କୋଇଲି ॥
କୋଇଲି ! ଶଶୀ ଯେସନ୍ତେ ଦିନୁ ଦିନୁ କ୍ଷୀଣ ।
ସେହିମତ କ୍ଷୀଣ ହେଲେ ମୋ ନନ୍ଦ ରାଜନ । ଲୋ କୋଇଲି ।
କୋଇଲି ! ସାତ ଦିନ ଇନ୍ଦ୍ର ବୃଷ୍ଟି କଲା ।
ସପତ ବରଷ ପୁଅ ମନ୍ଦର ଧଇଲା । ଲୋ କୋଇଲି ॥
କୋଇଲି ! ମାଇ ଯେ ମ ରଖ ପୁଷ୍ପ ତୁଣ୍ଡ ।
ହୃଦରେ ଦଶିଲ ତାର ସପତ ବ୍ରହ୍ମାଣ୍ଡ । ଲୋ କୋଇଲି ॥
କୋଇଲି ! ଷଣ୍ଢଣୀ ବନ୍ଦଣୀ ଭୁଜଦଣ୍ଡ
କ୍ଷମାକର ଦୋଷ ମୋର ଭଣେ ମାର୍କଣ୍ଡ । ଲୋ କୋଇଲି ॥



Digitized by srujanika@gmail.com

# ମାଲ୍ୟବନ୍ତ ପର୍ବତରେ ବର୍ଷାଋତୁ

**ବଳରାମ ଦାସ**

[ ବଳରାମ ଦାସ ପଞ୍ଚସଖା ଯୁଗର ପ୍ରସିଦ୍ଧ କବି । ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କ ମତରେ ସେ ଉତ୍କଳର ବାଲ୍ମୀକି (ଓ ବ୍ୟାସ) । ସେ ଥିଲେ ଗଜପତି ପ୍ରତାପରୁଦ୍ରଦେବଙ୍କ ସମକାଳୀନ । 'ମତ୍ତ ବଳରାମ' ନାମରେ ସେ ପରିଚିତ । ତାଙ୍କର ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ମହାମାୟା ।

'ଜଗମୋହନ ରାମାୟଣ', 'ବିଷ୍ଣୁପୁରାଣ', 'ବ୍ରହ୍ମାଣ୍ଡ ଭୂଗୋଳ', 'ବଟ ଅବକାଶ', 'ବେଦାନ୍ତସାର ଗୁପ୍ତଗୀତା', 'ଭାବ ସମୁଦ୍ର' ପ୍ରଭୃତି ତାଙ୍କର ପ୍ରସିଦ୍ଧ ରଚନାବଳୀ । 'ମାଲ୍ୟବନ୍ତ ପର୍ବତରେ ବର୍ଷାଋତୁ' ତାଙ୍କ ଦାଣ୍ଡି ରାମାୟଣରୁ ସଂଗୃହୀତ ହୋଇଛି । ]

ଏଥି ଅନନ୍ତରେ ଗୋ ପାର୍ବତୀ ଦେବୀ ଶୁଣ ।
ମାଲ୍ୟବନ୍ତ ପର୍ବତେ ରହିଲେ ରଘୁରାଣ ॥
ଶ୍ରୀରାମର ଚିତ୍ତ ହୋଇଅଛି ଛନ ଛନ ।
ଜଳଧର ମେଘର ଯେ ହୁଅଇ ଗଗନ ।
ଘଡ଼ଘଡ଼ି କରିଣ ଯେ ମାରଇ ବିଜୁଳି ।
ସନ୍ଧ୍ୟାକାଳେ ଆକାଶରେ ଉଦେ ଆର୍ଦ୍ରାବଳୀ ॥
ହାଣ୍ଡିଶୁଣ୍ଢ଼ି ଉଠି କରି ମେଘ ଗରଜନ୍ତି ।
ଝଘାତ ଶବଦ କରି ଚଡ଼କ ମାରନ୍ତି ॥
ପୂର୍ବଦିଗ ମେଘ ଯାଇ ପଶ୍ଚିମେ ପଶନ୍ତି ।
ଶୀତଳ ପବନ ଯେ ବହଇ ଚହଟଇ ॥
ଦକ୍ଷିଣ ମେରୁର ଯେ ସମୁଦ୍ର ପାଣି ତୋଳି ।
ଉତ୍ତର ଦିଗକୁ ହୁଏ ସେ ଜଳ ଘେନି ଚଳି ॥
ଇନ୍ଦ୍ରଧନୁ ଉଇଁ ଦିଶନ୍ତି ଯେ ଘନ ଘନ
ଅସ୍ତକାଳେ ଆଦିତ୍ୟ ଦିଶନ୍ତି ରକ୍ତବର୍ଣ୍ଣ ॥
ଉଦୟେ ମଣ୍ଡଳାକାର ଗଢ଼ରେ କୁହୁକ ।
ପ୍ରଚଣ୍ଡ ପବନ ଯେ ବହଇ ଝାଙ୍କି ଝାଙ୍କି ॥
କ୍ଷଣେ ଗୁଳୁଗୁଳି କ୍ଷଣେ ଶୀତଳ ଯେ ଭଏ
କ୍ଷଣେ ଦିବାକର ଦିଶେ ଆକାଶରେ ॥
ସିନ୍ଧୁ ଗରଜଇ ଯୁଝ ଦିଗ ଲାଗି ଦିଶେ ।
ଜଳଧର ଧୂମ ପୂର୍ଣ୍ଣ ଗଗନରେ ବସେ ॥
କୁସୁମ ବର୍ଣ୍ଣ ହୋଇଣ ଆଚ୍ଛାଦଇ ଗିରି ।
ଜଳ ଜଳ ଦିଶଇ ଯେ ଅଗାଧର ବାରି ॥

Digitized by srujanika@gmail.com

ଚନ୍ଦ୍ରମା ମଣ୍ଡଳ ଯେ ଧୂସର ହୋଇ ଦିଶେ ।
ରାତର ବାହାରେ ଯେ ନକ୍ଷତ୍ରଗଣ ମିଶେ ॥
ନିର୍ମଳ ଗଗନେ ଯେ କ୍ଷଣକେ ମେଘ ହୁଇଂ ।
ପୁଣି ହୁଂ ଗର୍ଜିଣ ସେ ଶୂନ୍ୟରେ ଆଚ୍ଛାଦଇ ॥
ଦବସେ ଗଜନ ଯେ କରଣ ଗମଗମ ।
ଭୂମିକମ୍ପ କରଣ କରଇ ଦମଦମ ॥
ଅଷାଢ଼ ମାସ ପ୍ରବେଶ ହୋଇଲାକ ସହୁଂ ।
ଝିମିଝିମି କରଣ ସେ ବରଷଇ ଚହୁଂ ॥
ବିଜୁଳି ଦେଖାଇଣ ମାରଇ ଘଡ଼ଘଡ଼ି ।
କି ଜାଣି ପବତ୍ରୁ ଶୃଙ୍ଗ ଯିବ [illegible] ଛିଡ଼ି ॥
ସହୁଂ ପ୍ରବେଶ ହୋଇଲା ଦୁଃସହ ବରଷା ।
ନାନା ପକ୍ଷୀମାନ ଗର୍ଦ୍ଧି ଛାଡ଼ିଲେ ବସା ॥
ବୃକ୍ଷମାନେ ପଲ୍ଲବନ୍ତି କଅଁଳନ୍ତି ଲତା ।
ମୟୂର ଚଢ଼ାଇ ଯେ ମଦନେ ଉନମତ୍ତା ॥
ମୃଗଭଦ୍ର ଗୁଞ୍ଜଣ ଚରନ୍ତି ଏଣେ ତେଣେ ।
କୋକିଳ ଝିଙ୍କାର ପଶିଲେ ଗହନ ବନେ ॥
ବୃକ୍ଷମାନେ ଦିଶନ୍ତି ଯେ ନୂଆ ପରକାର ।
କଦମ୍ବପୁଷ୍ପମାନେ ଫୁଟନ୍ତି ନିରନ୍ତର ॥
ଜାମୁଫଳ ପାଚିକରି ପଡ଼ନ୍ତି ଭୂମିରେ ।
ବନଫଳ ପାଚି ପଡ଼ୁଛନ୍ତି କେତେ ତଳେ ॥
*　　　　*　　　　*
ଶ୍ରାବଣ ପ୍ରବେଶ ହୋଏ ଏଥୁ ଅନନ୍ତରେ ।
ଘୋର ବୃଷ୍ଟି କରଣ ବରଷେ ଜଳଧରେ ॥
ଅହର୍ଣ୍ଣିଶ ଧାରା ଯେ ନ ଦିଶେ ଦିଶ ଦିଶ ।
ବନ ପଲ୍ଲବଣ ପୁଣି ହୁଅଇ ଅଦୃଶ୍ୟ ॥
ନଦୀମାନେ ବଢ଼ନ୍ତି ଯେ ପୁରେ ପୁଷ୍କରଣୀ ।
ପର୍ବତ ଉପରୁ ଝରି ପଡ଼ଇ ଯେ ପାଣି ॥
ସୂର୍ଯ୍ୟଙ୍କ କିରଣ ତେଜ ନ ଦିଶେ ଗଗନେ
ବୃକ୍ଷ କମ୍ପମାନ ହୁଅନ୍ତି ପ୍ରଚଣ୍ଡ ପବନେ ॥
ମାଲ୍ୟବନ୍ତ ପର୍ବତେ ଯେ ଶ୍ରୀରାମ ଅଛନ୍ତି ।
ଅନେକ ଦୁଃଖେଣ ସେ ବରଷା ବଞ୍ଚୁଛନ୍ତି ॥

●

Digitized by srujanika@gmail.com

# ଭାଗବତ ବାଣୀ

**ଜଗନ୍ନାଥ ଦାସ**

[ ପଞ୍ଚସଖା ଯୁଗର ପ୍ରସିଦ୍ଧ ପୁରାଣ ରଚୟିତା ଭାବରେ ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଦାସ ସୁପରିଚିତ । ଭକ୍ତିଯୁଗର କବିମାନଙ୍କମଧ୍ୟରେ ନିଜର ସାଧନା ଓ ସିଦ୍ଧି ପାଇଁ ତାଙ୍କର ସ୍ଥାନ ଏକକ ଓ ଅନନ୍ୟସାଧାରଣ । ଓଡ଼ିଶାର ସାମାଜିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ଜୀବନକୁ ତାଙ୍କର ଅବଦାନ ଅନନ୍ୟସାଧାରଣ । ସେ ଶ୍ରୀଚୈତନ୍ୟଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ଶ୍ରୀଚୈତନ୍ୟ ତାଙ୍କୁ 'ଅତିବଡ଼' ଉପାଧି ଦେଇଥିଲେ । ପ୍ରତାପରୁଦ୍ରଦେବ ତାଙ୍କର ଅଲୌକିକ ମହିମାରେ ମୁଗ୍ଧ ହୋଇ ତାଙ୍କୁ ଗୁରୁ କରିଥିଲେ । ତାଙ୍କର 'ଭାଗବତ' ଓଡ଼ିଆ ଜାତିର ଚିରନ୍ତନ ଗର୍ବ ଓ ଏହା ଓଡ଼ିଶାର ସାଂସ୍କୃତିକ ଓ ସାମାଜିକ ଜୀବନର ବିଶିଷ୍ଟ ଆଲେଖ୍ୟ ।

'ଭାଗବତ', 'ଅର୍ଥ କୋଇଲି', 'ତୁଳାଭିଣା', 'ଉଷାହରଣ' ଓ "ଗୁପ୍ତ ଭାଗବତ', ପ୍ରଭୃତି ତାଙ୍କର ପ୍ରସିଦ୍ଧ ରଚନାବଳୀ । 'ଭାଗବତବାଣୀ' ତାଙ୍କର ଭାଗବତରୁ ସଂଗୃହୀତ ହୋଇଛି । ]

ଅମୃତ ଶ୍ରବଣସୁ ବଚନ ।
କହୁ ତୋଷିବ ପ୍ରାଣୀମନ ॥
ସକଳ ଦେହେ ନାରାୟଣ ।
ବସନ୍ତି ଅନାଦି କାରଣ ॥
ଏ ଜୀବ ମାୟା ଦେହେ ଥାଇ ।
ପ୍ରକୃତି ରୂପେ ସମ୍ଭବଇ ॥
ଏ ରୂପେ ବିଶିଷ୍ଟ ପୁରୁଷ ।
ଈଶ୍ୱର ମାୟାରେ ପ୍ରବେଶ ॥
ଜୀବକୁ ଭୁଞ୍ଜାଇ ଭୁଞ୍ଜାଇ ।
ଅନ୍ତରେ ସାକ୍ଷୀ ରୂପେ ଥାଇ ॥
ଦୁଃଖେ ଅର୍ଜ୍ଜିତ ଯେତେ ଧନ ।
ସେ ନୁହେଁ ସୁଖେ ପ୍ରୟୋଜନ ॥
ସୁତ ତନୟ ଦାର ଦାସ ।
ଏ ସର୍ବ ବିକଳ୍ପ ପ୍ରକାଶ॥

Digitized by srujanika@gmail.com

କ୍ରମେ ସେ ଲୋକ କ୍ଷୀଣ ହୋଇ ।
କର୍ମ ସଣଲେ ଲୋକ ଯାନ୍ତି ॥
ପରମ ଶାସ୍ତ୍ର ଭାଗବତ ।
ଅଭ୍ୟାସ କରୁଥିବ ନିତ୍ୟ ॥
ଅନ୍ୟ ଶାସ୍ତ୍ରର ଗୁଣ ଦୋଷ ।
ମୂର୍ଖେ ନ କରିବ ପ୍ରକାଶ ॥
ସତ୍ୟ କହିବ ନିତ୍ୟ ତୁଣ୍ଡେ ।
କେବେ ହେଁ ନ ଥିବ ପାଷାଣ୍ଡେ ॥
ଯେ ଅବା ସୂତ ତାର ଧନ ।
କୃଷ୍ଣେ କରିବ ସମର୍ପଣ ॥
ନିର୍ଗୁଣ ନିରଞ୍ଜନ ହରି ।
ଧରଣୀ ତଳେ ଦେହ ଧରି ॥
ତିନି ଭୁବନ ଦେହ ଧରେ ।
ସୃଷ୍ଟି ପାଳନ ଅନ୍ତ କରେ ॥
ଧନ ତନୟ ସୁଖ ଆଶେ ।
ଶରୀର ଅନ୍ତେ ନର୍କେ ପଶେ ॥
ସକଳ ଜୀବ ମଧ୍ୟେ ହରି ।
ବସେ ଅନନ୍ତ ରୂପ ଧରି ॥
ଧନ ଅର୍ଜିଲେ ଧର୍ମ କରି ।
ଧର୍ମେ ପ୍ରାପତ ନରହରି ॥
କେବଳ ସଙ୍କେ ପଶୁ ବଧ ।
ଅନ୍ୟଥ ବଧନ୍ତି ପ୍ରମାଦ ॥
ସକଳ ଜୀବେ ନରହରି ।
ବସଇ ଆତ୍ମା ରୂପ ଧରି ॥
ଇଚ୍ଛାନୁସାରେ ଅବତରେ ।
ସ୍ୱଭାବେ ନାନା ରୂପ ଧରେ ॥
ହେ ନାଥ ତୁମ୍ଭର ମହିମା ।
କେ କହିପାରେ ଗୁଣ ସୀମା ॥
ଧନ, କାର୍ପଣ୍ୟ ସେବା ଫଳେ ।
କିବା ଅସାଧ୍ୟ ମହୀତଳେ ॥
ଏ ଘୋର କଳିଯୁଗ ଗତ ।
ଲୋକେ ହୋଇବେ ଦୁଷ୍ଟମତ ॥

Digitized by srujanika@gmail.com

ଅଗମ୍ୟେ ଜଣବେ ଗମନ ।
ନଧବେ ନଗମ ନଚନ ॥
ଏଣୁ ହୋଇବେ ଅଲ୍ପାୟୁଣ ।
ପାପେ ମଜଲେ ଯିବେ ନାଶ ॥
ଆତ୍ମା ବୁଣଲେ ସର୍ବସିଦ୍ଧି ।
ତରଭି ସଂସାର ଜଳଧି ॥
କର୍ମ ଆଦର ସର୍ବେ ଦୁଃଖ ।
ଦେବେ ହେଁ ନୁଦଞି ବିମୁଖ
ଧନ୍ୟ ଜୀବନ ଏ ଜଗତେ ।
ସେ ପ୍ରାଣ ଧରେ ପ୍ରାଣୀ ହିତେ ।

Digitized by srujanika@gmail.com

# ବାଣାସୁର ଶ୍ରୀକୃଷ୍ଣ ଯୁଦ୍ଧ ବର୍ଣ୍ଣନା

ଶିଶୁଶଙ୍କର ଦାସ

[ ଶିଶୁଶଙ୍କର ଦାସ ପ୍ରାକ୍ ଭଞ୍ଜୀୟ ସାହିତ୍ୟର ଏକ ବଳିଷ୍ଠ ପ୍ରତିଭା । ଯିଏ ଯୁଗର ପୂର୍ବରୁ ପୁରାଣର କଥାବସ୍ତୁକୁ କାବ୍ୟରୂପ ଦେଇ ସେ ଅନବଦ୍ୟ କାବ୍ୟ ସୃଷ୍ଟି କରିଛନ୍ତି । 'ଉଷାଭିଳାଷ' କାବ୍ୟର ରଚୟିତା ଭାବରେ ସେ ସୁପରିଚିତ । ପୁରାଣର ବ୍ୟାପକ ରଚନା ସମୟରେ ଶିଶୁଶଙ୍କର 'ଉଷାଭିଳାଷ' ପରି ଆଦିରସାତ୍ମକ କାବ୍ୟ ସୃଷ୍ଟି କରି ତାଙ୍କର ରସିକତା, ପାଣ୍ଡିତ୍ୟ ଓ କବିତ୍ୱର ପରିଚୟ ଦେଇଛନ୍ତି । 'ବାଣାସୁର ଶ୍ରୀକୃଷ୍ଣ ଯୁଦ୍ଧ ବର୍ଣ୍ଣନା' ତାଙ୍କର 'ଉଷାଭିଳାଷ' କାବ୍ୟରୁ ସଂଗୃହୀତ ହୋଇଛି । ]

ଗରୁଡ଼ ପିଠିରେ ବିଜେ ଦେବ ନାରାୟଣ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗ କରେଣ ।
ରଥ, ଗଜ, ଅଶ୍ୱ, ନର ଚତୁରଙ୍ଗ ଦଳ
ଅତି ସମ୍ଭ୍ରମରେ ବଜାଯେ ଅଖିଳ ମଙ୍ଗଳ ।
ଗୁରୁ ପାବୁଣରେ ବେଢ଼ିଛନ୍ତି ଯଦୁବୀରେ
ନ ଗଲେ ଉପମା ଦେବା ଯେହ୍ନେ ମନେ ସ୍ଫୁରେ । ୧ ।

ଟମକ ନିଶାଣ ଭେରୀ ମୃଦଙ୍ଗ କାହାଳ
ବେଣୁ ବୀଣା ଶଙ୍ଖ ମିଶି ଶୁଭଇ ତହାଳ ।
ଜଳଧି ମନ୍ଥନେ ଯେହ୍ନେ ଶୁଭେ ସିନ୍ଧୁ ଘୋଷ
ପାଞ୍ଚଜନ୍ୟ ଶଙ୍ଖ ଶବ୍ଦେ ସ୍ଫୁରେ ଦଶ ଦିଗ ।
ମଙ୍ଗଳ ପଢ଼ନ୍ତି ତହିଁ ବ୍ରାହ୍ମଣ ଅପାର
ନଟ ଭାଟମାନେ ତ କରନ୍ତି ଜୟେଦ୍‌ବାର । ୨ ।

ଶ୍ୱେତ ଛତ୍ର ଝିହାଡ଼ିଲ୍ଲ ଦନଜର ଜ୍ୟୋତି
କ୍ଷୀର ଜଳନିଧି କି ଲଙ୍ଘିଲା ବସୁମତୀ ।
ଚକୋର ହରଷ ହୋଏ ବିକାଶେ କୁମୁଦ
ପାଦରେଣୁ ଶାନ୍ତ ହେଲା ପଡ଼ି ଗଜ ମଦ ।
ବନ ଗିରି ନଦୀ ସବୁ ହୋଇଲାକ ସମ
ଶୋଣିତ-ପଦ୍ମ ବନେ ଉଦୟେ କିବା ସୋମ । ୩ ।

Digitized by srujanika@gmail.com

ଚତୁରଙ୍ଗ ବଳ ଘେନି ଯୁଝଇ ଅସୁର;
ଶିବଗଣ ଘେନିଣ ଶଙ୍କର ଆଗଭର !
ରାମକୃଷ୍ଣ ସାହା ପାଇ ଯଦୁବୀରମାନେ
ରଣେ ବାଣ ବଳ ପେଷି କୃତାନ୍ତ ସଦନେ ।
ହରି ହର ବେନି କଲେ ସମର ଯେ ଘୋର
ଓନିପୁର ଭସ୍ମେ ଭଙ୍ଗେ, ଦେଖନ୍ତି ଅମର । ୪ ।
ପିତାମହ ଶାନ୍ତ କରି ବୁଝାଇଲେ ଶିବ
ଜଗନ୍ନାଥ ସଙ୍ଗେ ବାଣ ଯୁଦ୍ଧ ଅସମ୍ଭବ ।
ଚକ୍ର ଘେନି ହାଣନ୍ତେ ତା ରଖିଲେ ଭବାନୀ
ଶେଷେ ବାହୁବଳ ଛେଦ ବୁଝାଇଲେ ତେନି ;
ଦୁର୍ଜୟ କଟକ ତା'ର ଜିଣି ଯଦୁପତି
ବାଣାକୁ ଜୀବନ ଦେଲେ ଶଙ୍କର ପୀରତି । ୫ ।
ଅନ୍ତପୁରେ ବିଜେ କଲେ ଅନିରୁଦ୍ଧ ପାଶେ
ନାଗପାଶ ପଳାଇଲେ ଗରୁଡ଼ର ତ୍ରାସେ ।
ବରକନ୍ୟା ଆଣି କୃଷ୍ଣ ବସାଇଲେ କୋଳେ
ଶଙ୍ଖ ବଜାଇ ବାହୁଡ଼େ ପରମ ମଙ୍ଗଳେ ।
ବାଦ୍ୟ ଘନଘନ ରବେ ଗଗନ ପୂରିଲା
ଦୈବେ ନରପତି ପୁରେ ଚମକ ପଡ଼ିଲା । ୬ ।
କନକ ଗିରିରେ ଯେହ୍ନେ ନୀଳ ନବଘନ
ଇନ୍ଦ୍ର ଧନୁ କୋଳେ ସେହି ତଡ଼ିତ ଶୋଭନ ।
ତେସନ କନକାସୁତ ଉପରେ ମୁରାରି
କୋଳେ ଅନିରୁଦ୍ଧ ଉଷା ଉପମି ନ ପାରି !
ସଧୀରେ ସଧୀରେ ଚଳେ ଭୂମିଗତ ବଳ
ଉପରେ ଗଗନ ଗତି ବିଜେ ଆଦିମୂଳ । ୭ ।
ଶ୍ୱେତ ଛତ୍ର ରତ୍ନମୟ ଗଜବାଜୀ ଅଛି
ତେଣୁ ସେ ସଇନି ଶୋଭା ସିନ୍ଧୁ ପ୍ରାୟେ ଗଚ୍ଛି ।
ଗରୁଡ଼ ମୁକୁନ୍ଦ ଯଥି ମନ୍ଦର ପରାୟେ
ଲାବଣ୍ୟ ଲକ୍ଷ୍ମୀ ଲଭିଲେ ସିନ୍ଧୁ ମନ୍ଥିବାୟେ ।
ପୂରୁବେ ଅମରେ ଲଭିଥିଲେ ଯେତେ ଯେତେ
ଏକରୂପ ଧରି ବାହାର ହୋଇଲେ ତେତେ । ୮ ।
ତନୁଲକ୍ଷ୍ମୀ, ଦନ୍ତମଣି, ଲପନ ଚନ୍ଦ୍ରମା
ଅଧର ପୀୟୂଷ, ଗତି ଗଜରାଜ ବାମା ।

Digitized by srujanika@gmail.com

ପଞ୍ଚସ୍ୱର ସ୍ୱୟଂବର, ଶୋଭା ପଞ୍ଚାଶ
ଭୂଷଣ ପାରିଜାତ, ସୁଗନ୍ଧଅଳ ବସ ।
ନିତ୍ୟ ଦେବତାଏ ଯେ ସେ ଏକ ରୂପ ଧରି
ଅଚ୍ୟୁତଙ୍କ ରୂପ ଲଭି ବାଦ ପରିହରି । ୯ ।
ଧାମରେ ଚରଣରେଣୁ ତମ ଆଚ୍ଛାଦିଲା
ଚନ୍ଦନର ସୁଗନ୍ଧ ଯେ ଅପାର ଘୋଟିଲା ।
ନିର୍ମଳ ଚନ୍ଦ୍ରମା ଛଟା ଧବଳ ଝଟିଲେ
ସାନନ୍ଦେଣ ପଥ ବନ୍ଧୁ ଦ୍ୱାରାବତୀ ମିଳେ ।
ଅନନ୍ତ ଯୁବତୀ ଏକ ଅନ୍ତରକୁ ରଞ୍ଜି
ଗୁରୁ-ଗୌରବ ଦେଖନ୍ତି ଉଚ୍ଛୁକ ବଢ଼ାଇ । ୧୦ ।
ହାସ ଗୁଞ୍ଜୁଥିଲା କେଉଁ ସ୍ୱରଭଳି ବାଟେ
ବସନ ଅଧେ ପିନ୍ଧିଲା ଧରିତା ଉଚାଟେ ।

× × ×

କୁଳବଧୂମାନେ ଜଳା ଗବାକ୍ଷରେ ରହି
ବହୁ ପ୍ରଶଂସା କରନ୍ତି ଏକଯୋଗ ହୋଇ । ୧୧ ।
ରାଜମାର୍ଗେ ବାରବିଳାସିନୀ ଉଭା ହୋଇ
ଗୃହ-ତୋରଣରେ କର ପଲ୍ଲବ ମେଳାଇ ।
ଉଚ୍ଚକୁଚ କଳସନ୍ତି ମଙ୍ଗଳ କଳସ
କୁସୁମ ବୃଷ୍ଟି ପ୍ରାୟେକ ମନ୍ଦ ମନ୍ଦ ହାସ ।
କନକ କଦଳୀ ନିନ୍ଦେ ଜାନୁ ଯୁଗ ଶୋଭା
ଲୋଚନ ସଫରୀ ସବ ମଙ୍ଗଳର ଶୋଭା । ୧୨ ।
ଚନ୍ଦନ ଦୂର୍ବା ଅକ୍ଷତ ଦଧି ଅର୍ଘ୍ୟ ଦେଇ
ବ୍ରାହ୍ମଣ ପକାନ୍ତି ଶୁଭେ ହୁଳହୁଳି ଧ୍ୱନି ।
ନବରେ ବାଜନ୍ତେ କଲେ ଅଖିଳ ମଙ୍ଗଳ
ପୁରବଧୂ ବନ୍ଦାପନ୍ତି ହରପ୍ରିୟା କୁଳ ।
ରୁକ୍ମିଣୀ ସହିତେ ସତ୍ୟଭାମା ତୁମ୍ବଦେଇ
ପରମାନନ୍ଦ ଉଚ୍ଛବ ଦ୍ୱାରବତୀ ହୋଇ । ୧୩ ।
ଶୁଭଲଗ୍ନ ଯୋଗ ଦେଖି ବାଜକଲେ ବେଦ
ଯଥାବିଧି ଉଚିତ ବେଦର ବୋଲ ଦେଇ ।
ଅନାଦି ନାଥର ଏହୁ ବହୁରୂପ ଲୀଳା
ଲୋକରଞ୍ଜ ନିମନ୍ତେ ନାନା ଚରିତ କଲା ।

Digitized by srujanika@gmail.com

ବ୍ରହ୍ମାକୁ ଗୋଚର ନୁହେଁ ମହିମା ଯାହାର
ବଚନେ କେ କହିବ ମନକୁ ଅଗୋଚର । ୧୪ ।
ସ୍ୱର ଯେ ଅନୁଗତ ତାଳ ଲୟ ଯେତେ
ସାହିତ୍ୟ ସଙ୍ଗୀତ ନାନା ଶାସ୍ତ୍ରଙ୍କ ମତେ ।
ମହାଜଳରାଶି ମତ ପରିମାଣ ନ ହୁଏ
ଯେ ଯେତେ ପଶି ପାରଇ ତେତିକ ଜାଣଇ ।
ତଥାପି ବୁଦ୍ଧିରେ କେହୁ ବୋଲନ୍ତି ଅପାର
ଶାସ୍ତ୍ର ଦୃଷ୍ଟି କି ଅଳାପ ଅନୁଭବ ସାର । ୧୫ ।

# ଛଅ ଋତୁ ବର୍ଣ୍ଣନା

ଦେବଦୁର୍ଲ୍ଲଭ ଦାସ

[ 'ରହସ୍ୟ ମଞ୍ଜରୀ'ର ଲେଖକ ଦେବଦୁର୍ଲ୍ଲଭ ଦାସ ଜଣେ ଗୃହୀ ବୈଷ୍ଣବ ଥିଲେ । ସେ ପ୍ରାଚୀନ ସାହିତ୍ୟର ଅନ୍ୟତମ ପ୍ରସିଦ୍ଧ କବି । ଗୋପୀପ୍ରେମର ପରାକାଷ୍ଠା ଓ ବୈଷ୍ଣବର ମହିମା ସମ୍ବନ୍ଧରେ ତାଙ୍କର 'ରହସ୍ୟ ମଞ୍ଜରୀ'ରେ ବହୁ ତତ୍ତ୍ୱ ରହିଛି । 'ଛଅଋତୁ ବର୍ଣ୍ଣନା' ତାଙ୍କର 'ରହସ୍ୟ ମଞ୍ଜରୀ' କାବ୍ୟରୁ ସଂଗୃହୀତ ହୋଇଛି । ]

ଏ ମହା ଗ୍ରୀଷମ ଋତୁ ବୈଶାଖର ଶେଷ,
ବହିଲା ଝଞ୍ଜାପବନ କୃଶାନୁ ବତାସ ।
ପାଚିଲେ ଆମ୍ବ ପଣସ ତାତିଲେ ସଲିଳ;
ଜଳିଲା ଶରୀର ମୋ ଟଳିଲା କଳେବର । ଘୋଷା ।

ମୁଁ ଗୋ ମଲି ମଲି

କାନ୍ତ ମୋ ଉପେକ୍ଷି ଗଲେ କଉଁ ଦୋଷ କଲି ।

ଗମ୍ଭୀର ଘରରେ ଗୋ ଗ୍ରୀଷମେ ନୋହେ ଶୋଇ;
ଦକ୍ଷିଣ ମେଲି ମଧରେ ପ୍ରଭୁ ସଙ୍ଗେ ରହି ।
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି,
ସ୍ୱାମୀ ସଙ୍ଗେ ବିବିଧ ବିନୋଦେ ହୋଳାହୋଳି ।
ଫୁଟି ତାଳସଜ ପଣା ପଇଡ଼ କଦଳୀ
କର୍ପୂର ମରିଚ ଖଣ୍ଡ ସିଙ୍ଗଡ଼ା ତାମ୍ବୂଳ
ମଣୋହି ସାରଣ ଦେହୁ ଖୁଆଇଣ ଖାଇ ।
ସୁସ୍ଥ ପାଇ ସ୍ୱାମୀ ଭୁଜ ପଞ୍ଜରେଣ ଶୋଇ ।
ଋଷଭ ସମ୍ପୂର୍ଣ୍ଣେ ପଶି ଆଷାଢ଼ର ଅନ୍ତେ,
ଶ୍ରାବଣ ପ୍ରବେଶ ଗୋ ଜଳଦ ଋତୁ ହୋନ୍ତେ
ଡାକିଲେ ଗଗନେ ମେଘ ସାଜିଲେ ବରଷା,
କଜାଣି ନିବିଡ଼ ଘୋର ଅନ୍ଧକାର ନିଶା !
ଘଡ଼ଘଡ଼ି ଉପରେ ପଡ଼ଇ ଚଡ଼ଚଡ଼ି
ଚଡ଼ଚଡ଼ି ଉପରେ ନିର୍ଘାତ ପଡ଼େ ମାଡ଼ି,

Digitized by srujanika@gmail.com

ବିଜୁଳି ଝଟକେ ଗୋ ଚମକି ଉଠେ ହିଆ;
କେସନେ ବଞ୍ଚିବ ମୋର କୋଳେ ନାହିଁ ନାହା ।
କମଳିନୀ ବିକସିଲେ, ଅବନୀ ଉଲ୍ଲସି,
ମାଢଲେ ମଣ୍ଡୂକେ ଯେ ଡାହୁକେ ଡାକେ ମିଶି ।
ନଦୀ ସ୍ରୋତ ବଢ଼ିଲେ, ଜଡ଼ିଲେ ସୁନାରସି,
ସୁବେଶ ଯୁବତୀ କାନ୍ତ ପଥ ଅନୁସରି ।
ପ୍ରବାସୀ ପୁରୁଷମାନେ ସବୁ କାର୍ଯ୍ୟ ଛାଡ଼ି
ଘରକୁ ଅଇଲେ ପ୍ରିୟା ଗୁଣ ମନେପଡ଼ି ।
ଏକମାତ୍ର ମୋର କାନ୍ତ ନଇଲେ ମୋ ପ୍ରାଣ,
ଜଡ଼ସ୍ଥେ ଜାଣିଲି ମୋର ତେଜିଲେ ମୁଁ ହାସ ।
ଭାଦ୍ରବର ଅନ୍ତେ ସଖି ଅଶିଣ ପଶନ୍ତେ,
ପ୍ରବେଶ ଶରଦଋତୁ ପ୍ରତେଜ ଆଦତ୍ୟେ,
ଗଗନୁ ଝଡ଼ିଲା ହିମ ମଣି-ଫଣୀ ପଶେ
ବରଷା ବଞ୍ଚାଇ ମେଘ ନାନା ବର୍ଣ୍ଣେ ଦଶେ ।
ଉତ୍ତରୁ ଅଇଲା ଶୀତ ବିକାଳ କୁମାସି,
କାନ୍ତ ଥିଲ କାମିନୀଙ୍କି ଦୂରୁ ଅପସରି;
ଫୁଟିଲେ କଇରବ କିଆ ଚନ୍ଦ୍ରକାନ୍ତ ବଢ଼େ;
ଶ୍ରୋଣେହା ରତ ଆରତେ ଶ୍ରୋଣେହାକ ଲେଢ଼େ ।
କାର୍ତ୍ତିକ ସରନ୍ତେ ସଖି ମଗୁଶିର ଆସେ;
କାକର ପଡ଼ିଲା ହିମନ୍ତରୁ ପରକାଶେ
ଦହିଲା କମଳ ବନ ବହିଲା ଉତ୍ତର;
ସୁସ୍ଥିର ହୋଇଲା ସିନ୍ଧୁ ସଧୀର ଲହର ।
ମରୁଆ ହସିଲା କୁନ୍ଦ ଦେଖିଣ ବିକାଶ,
ଖାଇଲେ ଗାଅନ୍ତା ଗୀତ ଗୁଣ୍ଡୁକେଶି ରସ,
ରୁଟିଗଲେ ନଦୀ ସବୁ ପଟିଗଲେ ବାଟ,
ଦନ ଆସି ପାହିଗଲା କାନ୍ତ ନାହିଁ ଭେଟ ।
ଶିଙ୍ଗଡ଼ା କେଶର ସଖି ଘିଅଘୃତେ ଯୋଇ;
କର୍ପୂର ମରିଚ ମେଲି ମିଠା ଦୁଧେ ମୋହି;
ସାରୁଆ ଖଣ୍ଡ ମିଶାଇ ବଟା ଭରି ଥୋଇ,
ଶୟନ ପଲଙ୍କେ କାନ୍ତ ଅଧରେ ଯୋଗାଇ ।
ପୁଷର ଅନ୍ତରେ ସଖି ମକର ପ୍ରଖ୍ୟାତ
ପ୍ରବେଶ ଶିଶିରଋତୁ ପବିତ୍ର ଜଗତ,

Digitized by srujanika@gmail.com

ମକର ସ୍ନାହ୍ୱାନ କଲେ ଧର୍ମ ଅର୍ଥେ ଜଣ;
କୁହୁଡ଼ି ପଡ଼ିଲା ଗୋ ଜାଡ଼ିଲା ବସୁନ୍ଧରା ।
ଫୁଟିଲା ମାଧବୀ ଗୋ ଗୁଟିଲା କଇଁଫୁଲ
ଛୁଟିଲା କଞ୍ଚନ କଢ଼ି ଦାମ ଗାଉ-ଗୁଲ;
ଲେଉଟିଲା ଉତ୍ତର ପବନ ନନସ୍ଥାନ
ଛୁଟିଲା ଶତଦ୍ରୁ ସିନ୍ଧୁ ଅନନ୍ତର ଫେନ ।
କାଳଗର୍ଭ ଦେଖି ସଖି ହୋଇଲେ ଚକିତ;
ଏତେବେଳେ ନ ଭେଟିଲେ ଗହସ୍ତି ବାରତ,
କୁରୁବେଲ ଚଉଁରଲେ ଅତ ଛସ୍ତ ଗନ୍ଧ
ନୂତନ ବକୁଳେ ଦେଖି କୋକିଳ ଆନନ୍ଦ ।
ମକର ସରନ୍ତେ ସଖି ଫଗୁଣର ଅନ୍ତେ
ଅଇଲା ବସନ୍ତଋତୁ ଅନଙ୍ଗ ସଙ୍ଗତେ;
ବହିଲାକ ମଳୟ ପବନ ଗନ୍ଧତୁଲେ;
ପଲ୍ଲବିଲେ ତରୁଲତା, ଫୁଟିଗଲେ ଫୁଲେ ।
ସୁବେଶ ରଚିଲ ସଖି ଗୋବିନ୍ଦଙ୍କ ଦୋଳ
ସବଂ ସୁଖ ଦେଇ ଗଲେ ମଦନ-ଗୋପାଳ
କହୁଁ କହୁଁ ଚୂତ ବୃକ୍ଷେ ଧରିଗଲେ କଷି
କୋକିଳ ଝୀଡ଼ଇ ଚୂତ ଡାଳେ ଡାଳେ ବସି ।
ଚଇତ ମାସରେ ରାଧାମାଧବ ସୁମର
ବୃନ୍ଦାବନେ ପଶିଣ ଲେଡ଼ଇ ଅନୁସର,
ଦେଖଇ ପଲ୍ଲବ ଲତା ତରୁ ଫଳ ଫୁଲେ,
ଦେବ କହେ ସଖି କର ଧର ଧର ବୁଲେ ।



Digitized by srujanika@gmail.com

# କୁଞ୍ଜବନେ ବଂଶୀ କେ ବଜାଇଲା ଗୋ

ସାଲବେଗ

[ ଷୋଡ଼ଶ/ସପ୍ତଦଶ ଶତାବ୍ଦୀର ଭକ୍ତକବି ଭାବରେ ସୁପରିଚିତ । ତାଙ୍କର ପିତା ଜନୈକ ମୁସଲମାନ ସେନାପତି ଓ ମାତା ବ୍ରାହ୍ମଣୀ । ତାଙ୍କର କବିତାଗୁଡ଼ିକରେ ଆବେଗଦୀପ୍ତ ପ୍ରାଣର ଆତ୍ମପ୍ରକାଶ ସହିତ ବୈଷ୍ଣବୀୟ ପ୍ରକଟିତ । ପ୍ରସିଦ୍ଧ ଭଜନ 'ଆହେ ନୀଳଶୈଳ'ର ରଚୟିତା ରୂପେ ଓଡ଼ିଶାର ପୁରପଲ୍ଲୀରେ ସେ ସୁପରିଚିତ । ]

ସଖି, କୁଞ୍ଜବନେ ବଂଶୀ କେ ବଜାଇଲା ଗୋ ॥ ପଦ ।

ଶୁଷ୍କ ତରୁମାନେ ଥିଲେ ଧ୍ୱନି ଶୁଣି ପଲ୍ଲବିଲେ
ପବନ ସ୍ଥଗିତ ହୋଇ ରହିଲା ଗୋ । ୧ ।

ପାଷାଣ ଦ୍ରବନ୍ତି ପାଣି ଯମୁନା ଟେକେ ଉଜାଣି
ଜଳ ତେଜି ମୀନ କୂଳେ ରହିଲା ଗୋ । ୨ ।

ବାଜି ଧାରେ କ୍ଷୁଦ୍ର ଗଣ୍ଠି ଲଜ୍ଜା ବନ୍ଧ ଗଲା ଫିଟି
ବସନ ପିନ୍ଧନ୍ତେ ତର ନୋହିଲା ଗୋ । ୩ ।

ଋଷିଙ୍କ ଆସନ ଟଳି ରସରେ ପଡ଼ିଲା ଢଳି
ବ୍ୟାଘ୍ର ପଛେ କୁରଙ୍ଗୀ ଗୋଡ଼ାଇଲା ଗୋ । ୪ ।

କହେ ସାଲବେଗ ହୀନ ଜାତିରେ ଅଟେ ଯବନ
ରାଧାକୃଷ୍ଣ ପଦେ ଚିତ୍ତ ରହିଲା ଗୋ । ୫ ।



Digitized by srujanika@gmail.com

# ନୃପତ ବଦାନ୍ୟ

**କାର୍ତ୍ତିକ ଦାସ**

[ ଷୋଡ଼ଶ/ସପ୍ତଦଶ ଶତକର ପ୍ରସିଦ୍ଧ କାବ୍ୟପ୍ରଣେତା ଭାବରେ ଓଡ଼ିଆ କାବ୍ୟ-ସାହିତ୍ୟରେ ପରିଚିତ । ତାଙ୍କର ରଚନାବଳୀ ମଧ୍ୟରେ 'ନବାନୁରାଗ' ଓ 'ରୁକ୍ମିଣୀ ବିଭା' ପ୍ରସିଦ୍ଧ ସୃଷ୍ଟି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିଜର ଅସାଧାରଣ କବିତ୍ୱ ଓ ପାଣ୍ଡିତ୍ୟ ପାଇଁ କାର୍ତ୍ତିକ ଦାସ ବିଶେଷ ମର୍ଯ୍ୟାଦା ଦାବୀ କରନ୍ତି । 'ନୃପଠ ବଦାନ୍ୟ' ତାଙ୍କର 'ରୁକ୍ମିଣୀ ବିଭା'ରୁ ସଂଗୃହୀତ ହୋଇଅଛି । ]

ଏଥୁ ଅନନ୍ତରେ ନିଶିଚଳି ପାନ୍ଥ
ନିତ୍ୟକର୍ମ ସାରିଣ ଯଦୁ ସାଇଁ ।୧।
ଯାଇ ବିଜୟେ ରତ୍ନ ସିଂହାସନ
ଶୁଭେ ବସିଲ ବିଶ୍ୱ ପାବନ ।୨।
ଦର୍ଶନ କଲେ ଯାଇ ରାଜାଗଣ
ଦେବା ମେଲାଣି ପ୍ରଭୁ ନାରାୟଣ ।୩।
ରୁନ୍ଧୁ ଚରଣ ରେଣୁ ପ୍ରସାଦେଣ
ସ୍ୱର୍ଗ ଭୋଗ କର ଅପ୍ରମାଦେଣ ।୪।
ଆଜ୍ଞା ଦେଲେଣ ଯିବୁ ନିଜପୁର
ଜନ୍ମେ ଜନ୍ମେ ହୋଇଥିବୁ କୋଙ୍କର ।୫।
ଶୁଣି ବୋଲନ୍ତି ପ୍ରଭୁ ଭଗବାନ
ଯାଇ ଦର୍ଶନ କଲେ ଉଗ୍ରସେନ ।୬।
ରାଜା ଆଜ୍ଞା ପ୍ରମାଣି ସେ ମେଲାଣି
କରିଦେବା ବୋଇଲେ ଚକ୍ରପାଣି ।୭।
ଉଗ୍ରସେନଙ୍କୁ ଭେଟି କରାଇଣ
ଦେଲେ ମେଲାଣି କରି ରାଜାଗଣ ।୮।
ଗଜ, ଅଇରାବତ କୁଳେ ଜାତ
ଗିରି ସମାନେ, ଦେହ ସଦା ମତ୍ତ ।୯।
ରତ୍ନ ବଳୟ ଶୋହେ ସ୍ୱର୍ଣ୍ଣ ଦନ୍ତ
ତହୁଂ ଦେଲେକ ଆଣି ଅପ୍ରମିତ ।୧୦।

Digitized by srujanika@gmail.com

ଶ୍ୟାମବର୍ଣ୍ଣ ଚନ୍ଦ୍ର କାନ୍ତ ଯେ ଅଶ୍ୱ
ଉତ୍ତମ ଦେଲେକ ଆଣି ଲକ୍ଷ ଦଶ ।୧୧।
ଇନ୍ଦ୍ର ଭୁବନୁ ଅମଳାଣ ବସ୍ତ୍ର
ଜଣେ ଜଣେ ଦେଲେ ମୂର୍ତ୍ତି ସହସ୍ର ।୧୨।
ସୂର୍ଯ୍ୟ ସ୍ୱରୂପ ଚନ୍ଦ୍ରସ୍ଥାଗ୍ରମଣି
ଦେଲେ କଣ ଜଣେକେ ଦଶ ଆଣି ।୧୩।
ଆଉ ରତ୍ନ ବଇଡ଼ୂର୍ଯ୍ୟ ମାଣିକ୍ୟ
ହୀର, ନୀଳା, ମୁକୁତା ପ୍ରବାଳେକ ।୧୪।
କୁଡ଼ କୁଡ଼ କରଣ କୁଡ଼ାଇଲେ
ଯେତେ ପାର ବହନଅ ବୋଇଲେ ।୧୫।
ନୃପମାନେ ଅଛନ୍ତି ଉଷ୍ଣ ହୋଇ
ମନେ ଯାହା ଇଚ୍ଛା ତାହା କର ତା ପାଇ ।୧୬।
ସବୁ ଇତର ଲୋକେ ବୋହି ସାର
ରତ୍ନମାନ ଯେମ ହେଲେ ବାହାର ।୧୭।
ରାଜାମାନଙ୍କ କଣ୍ଠେ ପାରିଜାତ
ମାଳା ଦ୍ରବ୍ୟ ଚନ୍ଦନ ଲେପି ଗାତ୍ର ।୧୮।
ଉଗ୍ରସେନ ରାଯ୍ୟେ ଦ୍ୟନ୍ତି ମେଲାଣି
ପାଇଗଲେ ସମସ୍ତ ନୃପମଣି ।୧୯।
ପଥେ ସ୍ତୁତନ୍ତି ଏକ ଆରକେଣ
କହୁଅଛନ୍ତି କୃଷ୍ଣ ଯଶ ଗୁଣ ।୨୦।

●

Digitized by srujanika@gmail.com

# ମାଣିକୀ

ପୁରୁଷୋତ୍ତମ ଦାସ

[ପୁରୁଷୋତ୍ତମ ଦାସ ଷୋଡ଼ଶ ଶତାବ୍ଦୀ / ସପ୍ତଦଶ ଶତାବ୍ଦୀର ପ୍ରସିଦ୍ଧ କବି । 'କାଞ୍ଚିକାବେରୀ' ପରି ପ୍ରାଚୀନ ଗାଥାକାବ୍ୟ ତାଙ୍କ ପ୍ରତିଭାର ଯଥାର୍ଥ ପରିଚୟ ବହନ କରିଛି । ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ଏବଂ ଏହି ଅଭିଯାନରେ ଶ୍ରୀଜଗନ୍ନାଥଙ୍କର ନେତୃତ୍ୱ ଗ୍ରହଣ, ଏହି କାବ୍ୟରେ ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି । 'ମାଣିକୀ' ସେହି କାବ୍ୟରୁ ସଂଗୃହୀତ ହୋଇଛି ।

ବର୍ତ୍ତୁଳ ମସ୍ତକ କ ଷେ ହେମ ନଟିକାଳ
ସିନ୍ଦୂର ବିନ୍ଦୁ ଲଲାଟେ ନୟନେ କଜ୍ଜ୍ୱଳ ।
ସୁଦିବ୍ୟ କରଣ ଖୋପା ଖୋଷିଛି ସୁନ୍ଦରୀ,
କପାଳେ ସୁନ୍ଦର ଚିତା ମୁନି-ମନୋହାରୀ ।
କୁରଙ୍ଗୀ-ନୟନରେ ତା ଅଞ୍ଜନ ରଞ୍ଜିଛି
ବନ୍ଧୂକ କୁସୁମ ପ୍ରାୟେ ବଦନ ଶୋହୁଛି ।
ତିଳଫୂଲ ନାସାରେ ବସିଣି ଚନ୍ଦ୍ରଗୁଣା
ଗୁରୁ ଶୁକ ପ୍ରାୟେ କର୍ଣ୍ଣେ ତାଟଙ୍କ ପ୍ରବୀଣା ।
କର୍ଣ୍ଣେ ମଲ୍ଲୀକଢ଼ି ତାର ଶୋହେ ଦିବ୍ୟ ଫୁଲ
ଏକକୁ ଆରେକ କଣି ସମସ୍ତ ଅମୂଲ ।
କଣ୍ଠରେ ଯେ କଣ୍ଠିମାଳ ଚନ୍ଦ୍ରା ଅଛି ଜଡ଼ି
କନକ ଖଚିତ ଶୋଭା ଦଶେ ହସ୍ତେ ଚୂଡ଼ି ।
ବାହେ ତାଡ଼ବନ୍ଦ ତହିଁ ତଳେ ପାଟଫୁଲ ।
ପଞ୍ଚାଙ୍ଗୁଳିରେ ମୁଦିକାମାନ ଦଶେ ଝଳି ।
କଳା ମେଘୀ ଝୀନ ଶାଢ଼ି ପରିଧାନ କରି
ବାମ କନ୍ଧେ ପଣତ ଯେ ହାଟୋଇଙ୍କ ପରି ।

* * *

କହ ଆଗୋ ଗୋପାଳୁଣୀ ତୁମ୍ଭ ନାମ କିସ
କେଉଁ ଗ୍ରାମ ଥିଅ ତୁମ୍ଭେ ବିଜେ କେଉଁ ଦେଶ ।

Digitized by srujanika@gmail.com

ଶାଶୁଘରେ ଖଟିଅଛ କି ନା ବାପଘରେ
କେତେଦିନୁ ଦଧି ଅଣି ବିକିଲ ଦାଣ୍ଡରେ ।

ତରକା ଯେ ବଡ଼ା କଣ ଜାଣଟି କି ଛନ୍ଦ
ଦେଖିଣ ପାରନ୍ତିକି ଶାଶୁ ଯେ ନଣନ୍ଦ ।
ଅଲ୍ପ କରିଣ ତୁମ୍ଭେ ଘରଠାରୁ ଆଣି,
ବିନ୍ଦୁତ ହେବା ପାଇଁ ପୂର୍ବଅଟିକି ପାଣି ।
ହସ ହସ ହୋଇଣ ଯେ ବୋଲଇ ମାଣିକ
ଆମ୍ଭର ତ ଜାଣିବା ସେ ତାହା ନ ଜାଣ କି ।
କୃଷ କେନ୍ଦ୍ରେଶ୍ୱର ୪ଥ ଚନ୍ଦ୍ର ମୋର ପଢ
ଏହୁ ବାଟେ ଦୁଧ ଦହି ବିକୁଥାଇ ଜଢ ।
ଛନ୍ଦବନ୍ଧ କଥା ଯାହା କହିଲ ଗୋସାଇଁ
ଛନ୍ଦ ନ ଶିଖିଲେ ଦାଣ୍ଡେ ଅଯୋଗ୍ୟ ବୋଲାଇ ।



Digitized by srujanika@gmail.com

# ମାୟା କେଉଟ (ନାବକେଳି)

ଦୀନକୃଷ୍ଣ ଦାସ

[ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ ଜଣେ ଲବ୍ଧପ୍ରତିଷ୍ଠ କବି । ତାଙ୍କର ରଚନାବଳୀ ମଧ୍ୟରେ 'ରସକଲ୍ଲୋଳ', 'ରସବିନୋଦ', 'ଜଗମୋହନ ଛାନ୍ଦ' 'ଗୁଣସାଗର ବୋଲି' 'ଧର୍ମସାଗର ବୋଲି' ପ୍ରଭୃତି ପ୍ରଧାନ । ]

ଏମନ୍ତ ବିସ୍ମୟ କରନ୍ତି ଏଣେ,
ନାବ ଗୋଟା ଏକ ଦିଶିଲା ତେଣେ ।
କୃଷ୍ଣ ବୋଲି ତାଙ୍କୁ ନ ଜାଣି କେହି,
ମାୟା ରୂପେ ଛନ୍ତି କେଉଟ ହୋଇ ।
ଅଖାଳି ଦଉଡ଼ି ବାନ୍ଧିଛି ଟାଣି,
ଦଦରା ନାବରୁ ବହୁଛି ପାଣି ।
ପାକଳ ଦଉଡ଼ି କାନ୍ଧରେ ପାଡ଼ି,
ନାବ ପୁଚ୍ଛ ମଙ୍ଗ ବସିଛି ମାଡ଼ି ।
କରେଣ ବଇଣୀ କଙ୍କଣ ଆସ୍ପ,
ମୟୂର ଝୁଲଇ ମଥାରେ ଶୋସ୍ପ ।
ମୀନ ଖାଲୁଆଏ ଅଛି ପାଖର
ଜାଲ ପଡ଼ିଅଛି ନାବ ଭିତର ।
ତମାଲି କରି ଗୀତ ପଦେ ଗାଇ,
ସ୍ଥିର କରି ନାବ ଦେଉଛି ବାହି ।
ଏତେ ହଟିଆ ଗୋ ନନ୍ଦର ବସ୍ତ୍ରି,
ବୃଦ୍ଧ ରୂପ ଧରି ନାବ ବହୁଛି ।
ଅଠ ପରପଞ୍ଚ ଖାଙ୍କର କେଶ,
ଦେଖି ନ ଯୋଗାଏ ଏମନ୍ତ ବେଶ ।
ବେଙ୍ଗ ନୟନରୁ ପେଚଡ଼ା ବହେ,
ବାଙ୍କ ନୟନେ ଟେରିଆଇଁ ଚାହେଁ ।
ଗୋଦଡ଼ ହୋଇଛି ଡାହାଣ ଗୋଡ଼
ବୁକୁରେ ପଡ଼ିଛି ପାକଳ ଯୋଡ଼ ।

Digitized by srujanika@gmail.com

କଳା ଦେହ ତାର ବସ୍ତ୍ର ମୋଟା
ଦାନ୍ତ ନାହିଁ ବୁଢ଼ା ପାକୁଆ ଗୋଟା ।
ବଚନ କହିଲେ କୋମଳ ସ୍ୱରେ
ହସିଲେ ବୁଢ଼ା ପରପଞ୍ଚ ବଶେ ।
ଆମେ ଦେଖି ତାଙ୍କୁ ହର୍ଷିତ ହୋଇ
ନାବ ଆଣ ଦେଲ ଡାକିଲୁ ଗୋହରି ।
ଜଣେ ଜଣେ ତୋତେ କହୁଛୁ ଦେବୁ;
ପାଣି କଣଦେଲେ ମଥିଗ ପିବୁ ।
ଆମ୍ବିଳ ହୋଇଲା ବଡ଼ା ଗୋରସ
ଆଉ ଘଣ୍ଟାକେ ସବୁ ଯିବ ନାଶ ।
ସକାଳ ପହରୁ ଅଛୁ ଅନାଇ
ବେଗେ ନାବ ଆଣ କେଉଟ ଭାଇ ।
ଅନେକ ପ୍ରକାରେ ଡାକିଲୁ ତାଙ୍କୁ,
କେବେ ନ ଆସିଲା ଆମ୍ଭ ପାଖକୁ ।
ବଦନ ଟେକି କଣିଆଇ ବୁଢ଼େ
ଏଣିକି ବୋଇଲେ ତେଣିକି ଯାଏ ।
କାଳ ଯେସନେ ଆଉ ପାଶେ ରହି
ଡାକ ଡାକ ମଲେ ଶୁଣଇ ନାହିଁ ।
ମନ ତାପ କଣ ଅତି ଧିକ୍କାରେ
ଗାଳି ଦେଲୁ ତାଙ୍କୁ ନାନା ପ୍ରକାରେ ।
ପଡ଼ି ନ ମଲୁ ରେ ଜାଉଁଆ ଗୋଟା
କାଳ ହୋଇଲୁ କି ଆରେ କେଉଟା ।
ଡାକ ଡାକ ଆମ୍ଭେ ମରୁଛୁ ଏଣେ
ସାପ ଖାଉ ତୋର ଦେହ ଶ୍ରବଣେ ।
ଦଇବ ଯେମନ୍ତେ ହୋଇବ ସତ
ବୁକୁରେ ତୋର ମାଡ଼ିବସୁ ଭୂତ ।
ନାବ ସଙ୍ଗ ଖଣ୍ଡ ପଡ଼ିବ ଚୂର୍ଣ୍ଣ—
ମଝି ନଈରେ ରୁ ମରିବୁ ବୁଡ଼ି ।
ଅଟ୍ଟାଳ ଦଉଡ଼ି ଛିଣ୍ଡିଣ ଯାଉ
ନାକ ବୁଡ଼ି ତୋତେ କୁମ୍ଭୀର ଖାଉ ।
ଏକ ମୁଖ ହୋଇ ସଙ୍ଗସୁଆଳୀ
ନାନା ପ୍ରକାରେ ଦେଉଅଛୁ ଗାଳି ।

# ଗୋପୀ ବିଳାପ

ଭୂପତି ପଣ୍ଡିତ

[ ଭୂପତି ପଣ୍ଡିତ ଷୋଡ଼ଶ / ସପ୍ତଦଶ ଶତକ ଓଡ଼ିଆ କାବ୍ୟ-ସାହିତ୍ୟରେ ଗଭୀର କୃତିତ୍ୱର ପରିଚୟ ଦେଇଛନ୍ତି । ସେ ପଶ୍ଚିମାଞ୍ଚଳର ଜଣେ ସାରସ୍ୱତ ବ୍ରାହ୍ମଣ ଥିଲେ । 'ପ୍ରେମ-ପଞ୍ଚାମୃତ' ତାଙ୍କର ପ୍ରସିଦ୍ଧ ସୃଷ୍ଟି । 'ଗୋପୀ ବିଳାପ' 'ପ୍ରେମ-ପଞ୍ଚାମୃତ'ରୁ ସଂଗୃହୀତ ହୋଇଛି । ]

ଧ୍ୟାନ ବୋଲନ୍ତି ମନ ଶୁଣ
ମୁନି କହନ୍ତି ହେ ସୁଜନ ।
କୃଷ୍ଣଙ୍କୁ ଖୋଜି ବନେ ବନେ
ନିରାଶ ହେଲେ ଗୋପୀଗଣେ ।
ରାସମଣ୍ଡଳ ମଧ୍ୟେ ମିଳି
ଷୋଳ ସହସ୍ର ଗୋପବାଳୀ ।
ସମସ୍ତେ ହୋଇ ଏକ ଠୁଳ
କୃଷ୍ଣ ହଜିଲ କଲେ ମୂଳ ।
କାନ୍ଦନ୍ତି ଅତି ଶୋକଭରେ
ଷୋଳ ସହସ୍ର ଉଚ୍ଚସ୍ୱରେ ।
ସଖୀଙ୍କ ମୁଖ ଶୋକ ସ୍ୱନ,
ପୂରିଲା ଦ୍ୱାଦଶ କାନନ ।
କାରୁଣ ରସ ଆସ୍ୱାଦନ
କରି ସନ୍ତୋଷ ଭଗବାନ ।
ଦୟାସାଗର ସର୍ବସାକ୍ଷୀ
କାହୁଁ ସମ୍ଭବ ତାଙ୍କ ଦେଖି ।
ଗୋପୀଙ୍କ ମୁଖ ଶୋକ ଧ୍ୱନି
କୃଷ୍ଣ ଅଧୈର୍ଯ୍ୟ ହେଲେ ଶୁଣି ।
ଗୋପୀଙ୍କ ତହୁଂ ବଳୀୟାର
କୃଷ୍ଣର ଶୋକ ଅଗୋଚର ।
କାନ୍ଦନ୍ତି ଅତି ଉଚ୍ଚସ୍ୱରେ
ମିଳିଲେ ଗୋପୀଙ୍କ ମଧ୍ୟରେ ।

Digitized by srujanika@gmail.com

ଏକଇ କ୍ଷଣେ ଏକାବେଳେ
ସଭିଙ୍କ ଲଗାଇଲେ ଗଳେ ।
ସର୍ବେ କୃଷ୍ଣଙ୍କୁ ଆଗ ଦେଖି
ସଭିଙ୍କ ସଙ୍ଗେ ସ୍ୱଣଆଖି ।
ସର୍ବେ ବୋଲନ୍ତି ଆଗ ମୋତେ
କୃଷ୍ଣ ଭିଡ଼ନ୍ତି ହୃଦ ଗତେ ।
ମୋତେ ଅନାଇ କଲେ ଶୋକ,
ନୟନୁ ପୋଛିଲେ ଲୋତକ ।
ଶ୍ରୀହସ୍ତେ ଘେନ ପୀତାଞ୍ଚଳ
ମୋ ମୁଖୁଁ ପୋଛିଦେଲେ ଝାଳ ।
ଉବଣ୍ଣ ବାନ୍ଧିଲେ ସଜାଡ଼ି ।
ମୋ ଦେହୁ ଦେଲେ ଧୂଳି ଝାଡ଼ି ।
ମୋତେ ସେ ଜାନୁରେ ବସାଇ
ବିନୟ ବାକ୍ୟେ ବୁଝାଇ ।
ଆଗ ପ୍ରବୋଧ ମୋତେ କଲେ
ପଛେ ଗୋପୀଙ୍କି ସମ୍ଭାଳିଲେ ।
ଏ ରୂପେ ସଭିଙ୍କି ସାକ୍ଷାତେ
କୃଷ୍ଣ କରାଇଲେ ପରତେ ।



Digitized by srujanika@gmail.com

# ଚିତ୍ରକୂଟର ବର୍ଣ୍ଣନା

ଉପେନ୍ଦ୍ର ଭଞ୍ଜ

[ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟରେ କବି ସମ୍ରାଟ ରୂପେ ପରିଚିତ । ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କ ପୌତ୍ର ଓ ନୀଳକଣ୍ଠ ଭଞ୍ଜଙ୍କ ପୁତ୍ର । ୧୬୭୦ ଖ୍ରୀ:ରେ ଜନ୍ମଗ୍ରହଣ କରିଥିଲେ ଓ ୧୭୧୦ ଖ୍ରୀ: ରେ ଦେହତ୍ୟାଗ କରିଥିବାର ଅନୁମାନ କରାଯାଏ । ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି, ସୁଭଦ୍ରାପରିଣୟ ଓ ବୈଦେହୀଶବିଳାସ ପ୍ରଭୃତି ପ୍ରସିଦ୍ଧ କାବ୍ୟର ରଚୟିତା ରୂପେ ସେ ପ୍ରଖ୍ୟାତ । କାବ୍ୟ ଯୁଗର ସର୍ବଶ୍ରେଷ୍ଠ କବି ରୂପେ ପରିଚିତ ଥିବାରୁ ସେହି ଯୁଗକୁ ତାଙ୍କର ନାମାନୁଯାୟୀ 'ଭଞ୍ଜଯୁଗ' ନାମରେ ଅଭିହିତ କରାଯାଇଛି । ଚିତ୍ରକୂଟର ବର୍ଣ୍ଣନା ତାଙ୍କର ମହାନ୍ କାବ୍ୟ 'ବୈଦେହୀଶ ବିଳାସ'ରୁ ସଂଗୃହୀତ ହୋଇଛି । ]

ବିହରି ମାଳ ଯମକରେ କବି ମନେ
ବୁଲେ ରାମ-ରାମ ରାମନେତ୍ରୀ ଘେନି ବନେ ଯେ ।
ବୃହଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ
ବୃତ ତମାଳମାଳ ମାଳତୀ ଲତା ତହିଁ ଯେ । ୧ ।

ବହଇ ନିର୍ଝର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ ଯେ ।
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ରଶୀତଳକୁ ବାତ
ବନ୍ଦେ ମନ୍ଦ ମନ୍ଦ ମନ୍ଦସୁତ କରେ ରୁତ ଯେ । ୨ ।

ବିଞ୍ଚି ଘନ ଘନ ଘନ କୁଶ କଣ ଯଥା
ବୃଷ୍ଟି ମଧୁର ମଧୁରେ ମଧୁରନେ ତଥା ଯେ ।
ବିଭ୍ରାଜିତ ଭୃଙ୍ଗ ଭୃଙ୍ଗ ଭୃଙ୍ଗ କରେ କେଳି ।
ବନି ବନି ବନିତା କି ପୁଷ୍ପହାସେ ଝଳି ଯେ । ୩ ।

ବୋଧେ ଶୃଙ୍ଖଳାରେ ରଘୁନାଥ ସୀତା ମତି
ବିଚିତ୍ର ଚିତ୍ରକୂଟ ଯେ କୂଟକେ ବ୍ରତ ଯେ ।
ବ୍ରତଗୀତ ଜୟନ୍ତୀ ଅତିକା ବାସନ୍ତୀ ।
ବାସନ୍ତୀ ସତିରେ ! ଫୁଲ ଫଳରେ ପ୍ରବର୍ତ୍ତି ଯେ । ୪ ।

Digitized by srujanika@gmail.com

ବର୍ହିଁକ ଡକ ଅଳି ଆଳି ଯେ ବହ୍ନଶତ,
ବହ୍ନଶତ ମାନ ମାନ ଶୁକ ସୁକଚତ ଯେ ।
ବତର ତରଳନେତ୍ର ନେତ୍ର ସୁବାସିନ ।
ବାସିଙ୍ଗ ସୁଜାତ କାନ୍ତ ସ୍ୱଜ୍ଞା ଲୋଚନ ଯେ । ୫ ।
ବନ ସ୍ୱତ ଶୋଭିତ ଖ୍ୟାତ ବୈଭ୍ରାଜ ।
ବୈଭ୍ରାଜ ସୁରସା ରଂସା କରକର ବୀଜ ଯେ ।
ଷ୍ଟଜନମିତ ମିତ ହ୍ୱରଷ ରସବାର ।
ବାରଣ ବୃଷା ବୃଷାଳ ସାଳ ପୁର ପୁର ଯେ । ୬ ।
ବୋଧନ୍ତି ଗ୍ରମ ସିଂହ୍ୱାନ୍ଦେ୍ାଳକେ ଅବଳା ।
ବଳକାପନ୍ତି କଣ୍ଠରୁ ଧୂନକୁ ଧବଳା ଯେ ।
ବଳାଙ୍କ ମାନସ ମାନ ଅନା ପ୍ରାଣବନ୍ଧୁ
ବନ୍ଧୁକ ରଞ୍ଜନ ଅଟ ରଙ୍ଗ ନରବନ୍ଧୁ ଯେ । ୭ ।
ବନ୍ଧୁର ପଅଟି ହ୍ୱେଜି ହ୍ୱେଜି ପଦ ବଳା
ବଳାଧ୍ୱନ ପ୍ରାସ୍ୱେ ଝିଲ୍ଲୀ ଶବଦ ପ୍ରବଳା ଯେ ।
ବଳାପନ୍ତି ଫଳବନ୍ତ ପ୍ରଫୁଲ୍ଲ ସେବନ୍ତ ।
ବଢଣା ଲକ୍ଷଣା ଦେଖ ବିହ୍ୱରେ ପାବନ୍ତ ଯେ । ୮ ।
ବଣାର୍ଣ୍ଣ ଅପୁର୍ବ ହ୍ୱୋଇ କେତେ ନାଗବଲ୍ଲୀ ।
ବଲ୍ଲିକା ତଳେ ଶୟନ ଦ୍ରୁମଗ୍ନ ଅବଳୀ ଯେ ।
ବଳବ ଚରଣ ରଥୁଁ ଏମନ୍ତ ଶ୍ରବନା ।
ବନାଳୀ ପ୍ରଭୁ କରଣ କର ସମ୍ଭାବନା ଯେ । ୯ ।
ବ୍ୟାଘ୍ର ଗଡରେ ସଧୀରେ କହନ୍ତି ବୀର ସେ ।
ବୀରତରୁରେ ତରୁଣି କୁସୁମ ବରଷେ ଯେ ।
ବର ଉନ୍ନତ ଉନ୍ନତ ଉପମା ବିଷ୍ଣନ ।
ବିହ୍ୱତ କରନ୍ତୁ ବନ୍ଧୁ କଲୁଭ ବଚନ ଯେ । ୧୦ ।



Digitized by srujanika@gmail.com

# ବୃନ୍ଦାବନ ବର୍ଣ୍ଣନା

ଅଭିମନ୍ୟୁ ସାମନ୍ତସିଂହାର

[ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଭକ୍ତକବି ଅଭିମନ୍ୟୁ ସାମନ୍ତସିଂହାର ଜଣେ ପ୍ରତିଭାସମ୍ପନ୍ନ ବୈଷ୍ଣବ ରସିକ କବି ରୂପେ ସୁପରିଚିତ । ସେ ଖ୍ରୀ: ୧୭୫୭ (କେତେକଙ୍କ ମତରେ ଖ୍ରୀ: ୧୭୬୦)ରେ ଯାଜପୁର ସବ୍‌ଡିଭିଜନ ଅନ୍ତର୍ଗତ ବାଲିଆ ଜମିଦାରୀ ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ । ସେ ଇନ୍ଦ୍ରଜିତ ସାମନ୍ତସିଂହାରଙ୍କ ଅଷ୍ଟମ ପତ୍ନୀଙ୍କର ପ୍ରଥମ ପୁତ୍ର ଥିଲେ ।

'ପ୍ରେମଚିନ୍ତାମଣି', 'ପ୍ରେମକଳା', 'ରସବତୀ', 'ସୁଲକ୍ଷଣା', 'ବିଦଗ୍ଧଚିନ୍ତାମଣି', ତାଙ୍କର ପ୍ରସିଦ୍ଧ ରଚନାବଳୀ । 'ବୃନ୍ଦାବନ ବର୍ଣ୍ଣନା' ତାଙ୍କର 'ପ୍ରେମଚିନ୍ତାମଣି'ରୁ ସଂଗୃହୀତ ହୋଇଛି । ]

ସାବଧାନ ହୋଇ ଶୁଣ ଏ ଅନ୍ତେ ନୃପତି
କୁଞ୍ଜ ମଣ୍ଡାଇଲେ ତେଣେ ଯାଇ ବୃନ୍ଦାବତୀ । ୧ ।
ଅବ୍ୟକ୍ତ ସ୍ଥାନ ସେ ବ୍ୟକ୍ତ କରି କହୁଥାଇଁ
ପରାଙ୍ମୁଖ ଜନକୁ ଏ କଥା ନ ଶୁଣାଇ । ୨ ।
କୃଷ୍ଣପ୍ରେମ ଭକ୍ତ ମାତ୍ର ଏ ମର୍ମ ଜାଣିବେ
ଖଳେ ଶୁଣି ନ ବୁଝିଲେ କାରଣ ପାଇବେ । ୩ ।
ଅମୃତ ପରାଏ ଗୁଣ ଅଛି ଏହାଠାରେ
ଜାଣୁ ବା ନ ଜାଣୁ କର୍ଣ୍ଣେ ଶୁଣି ପ୍ରାଣୀ ତରେ । ୪ ।
ଶୁଣି ନିନ୍ଦା କଲେ ପୁଣି ଲଭିବେ କାରଣ
ପୁତନାଦି ବହୁ ସାକ୍ଷୀ ଅଛନ୍ତି ପ୍ରମାଣ । ୫ ।
ଅନ୍ତ କରି ନୋହଇ ସେ ନିତ୍ୟ ବୃନ୍ଦାବନ
ଯହିଁ କଳ୍ପତରୁ ଲତା ଗୁଳ୍ମ ଆଦି ଘେନ । ୬ ।
ଚଉରାଶୀ କୋଶ ଚଉରାଶୀ ଆବରଣ
ଈଶ୍ୱର ଅନନ୍ତ ଲୀଳା ତହିଁରେ ପ୍ରମାଣ । ୭ ।
ଷୋଡ଼ଶ ଆଭରଣ ତହିଁ ମୋକ୍ଷ ପୁଣି
କାରୁଣ୍ୟାଦି ଜଳ ଯହିଁ ପରିଖା ଭ୍ରମଣି । ୮ ।
ଭୂର୍ଜାଦି ଗୁଳ୍ମକ ଅଣ୍ଡଜ ଏ ଉଦ୍ଭିଜ ଜାତ
ତାହାର ପ୍ରଥମ ଆବରଣ ତାଙ୍କ ସ୍ଥିତ । ୯ ।

Digitized by srujanika@gmail.com

ଜସ୍ମୁଜ ଉଷ୍ମଜ ଦ୍ୱିତୀୟ ଆବରଣ
ତୃତୀୟେ ଅଛନ୍ତି ନଦୀ ପର୍ବତାଦି ଗଣ । ୧୦ ।
ଚତୁର୍ଥେ ଅଛନ୍ତି ପୃଥ୍ୱୀ ସିନ୍ଧୁ ଭୂତଗଣ
ଯାରୁଧାନ ନାଗେ ରହିଛନ୍ତି ପଞ୍ଚମେଣ । ୧୧ ।
ଷଷ୍ଠମେ ଅଛନ୍ତି ସୁର ଗନ୍ଧର୍ବ ସ୍ତୃଭଣ
ଭିନ୍ନେ ଭିନ୍ନେ ତାଙ୍କ ସ୍ଥାନ ଚଳ ଆକୃତେଣ । ୧୨ ।
ସପ୍ତମେ ଅଛନ୍ତି ଧ୍ରୁବଲୋକ ଆଦିକରି
ଅଷ୍ଟମେ ଅଛନ୍ତି ସନକାଦି ତପସ୍ୱୀ । ୧୩ ।
ନବମେ ଅଛନ୍ତି ବିଷ୍ଣୁ ପାର୍ଷଦେ ପୁଣ
ଦଶମେ ଅଛନ୍ତି ବିଷ୍ଣୁ ଅବତାରଗଣ । ୧୪ ।
ଗୋକୁଳ ଗୋପାଳ ଏକାଦଶ ଅଛନ୍ତି
ଦ୍ୱାଦଶରେ ଗୋପୀଗଣମାନେ ରହିଛନ୍ତି । ୧୫ ।
ତ୍ରୟୋଦଶେ ଅଟଇ ଯେ ଅନନ୍ତ ବିଧାନ
ଯୋଗମାୟା ଯେଣ ସେ କରନ୍ତି ଲୀଳାମାନ । ୧୬ ।
ତାହାଙ୍କ ମସ୍ତକମଣି ପରେ ଚତୁର୍ଦ୍ଦଶେ
ବିହାର କରନ୍ତି ତହିଁ କୃଷ୍ଣ ସଖା ବଂଶେ । ୧୭ ।
ପଞ୍ଚଦଶେ ଅଛନ୍ତି ଯେ ନିତ୍ୟ ସଖୀଗଣ
ଷୋଡ଼ଦଶେ ଯାଇ ରାଧାକୃଷ୍ଣ ବିହରଣ । ୧୮ ।
ଦୃଶ୍ୟାଦୃଶ୍ୟ ଗମ୍ୟାଗମ୍ୟ ଅଟଇ ସେ ସ୍ଥାନ
ବେଦ ଗମିନାହିଁ କରୁଥାଇ ଅନୁମାନ । ୧୯ ।
ରସମୟ ସ୍ଥାନ ରସମୟ ମୂର୍ତ୍ତି ରାଧାକୃଷ୍ଣ
ରାଧାକୁଣ୍ଡ ଶ୍ୟାମକୁଣ୍ଡ ସ୍ୱୟଂ ବେନି ଜନ । ୨୦ ।
କୃଷ୍ଣ ଗୌରବର୍ଣ୍ଣ ଧରି ପରସ୍ପରେ ମିଳି
ଅଭେଦ ଶକ୍ତିରେ ସେ କରୁଛନ୍ତି କେଳି । ୨୧ ।



Digitized by srujanika@gmail.com

# ମନବୋଧ ଚଉତିଶା

**ଭକ୍ତଚରଣ ଦାସ**

[ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ଶେଷ ଦଶକର ବଶିଷ୍ଟ ଗୀତିକାର ରୂପେ ପରିଚିତ । ୧୭୮୦ ଖ୍ରୀ: ରେ ରଣପୁର ଅନ୍ତର୍ଗତ ମୁନାଖଳାରେ ଜନ୍ମଗ୍ରହଣ କରିଥିଲେ ଓ ୧୮୦୯ ଖ୍ରୀ: ରେ ପ୍ରାଣତ୍ୟାଗ କରିଥିଲେ । 'ମଥୁରା ମଙ୍ଗଳ' ତାଙ୍କର ପ୍ରସିଦ୍ଧ ରଚନା ଓ ଏହି କାବ୍ୟ ରଚନା କରି ସେ ଉତ୍କଳର ପୁରପଲ୍ଲୀରେ ସୁପରିଚିତ । ]

 କହଇ ମନ ଆରେ ମୋ ବୋଲ କର
କଳା-ଶ୍ରୀମୁଖ ବାରେ ଦେଖିବା ସ୍ଥିର ରେ ।
କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଠି
କି ଯେନ ଯିବୁ ତୋର ଛୁଟିଲେ ଘଟ ରେ
ଖଣ୍ଡି ହେ ଖଣ୍ଡି ତୋର ପଞ୍ଜରା କାଟି
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ ।
ଖଟ ପଲଙ୍କେ ମନ ଶେଯାଇ ଶୋଉ
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁ ରେ । ୨ ।
ଗଲେଣି ତୋ ସଙ୍ଗରୁ ଯେତେକ ଜନ
ଗଣ୍ଠିରେ ବାନ୍ଧିନେଲେ କେତେକ ଧନ ରେ
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ
ଗାଡ଼େ ମଣ୍ଡିଣ ନିତ୍ୟେ ଧନ ଅର୍ଜିଲୁ ରେ । ୩ ।
ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ ।
ଘର ଘରଣୀ ଦେହ କାଳାଉଥିବେ
ଯେଣି ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ରେ । ୪ ।
ଉଦ୍ଧାର ହେବୁ ଯେବେ ଭବସାଗରୁ
ଉପାୟ କରି ଭଜ ଏବେ ଶ୍ରୀଗୁରୁ ରେ;
ଊଣା ହେଉଛୁ ଦିନୁ ଦିନୁ ଆୟୁଷ
ଆଉ ଏଣିକି ଅଛୁ କେତେ ବୟସ ରେ । ୫ ।

Digitized by srujanika@gmail.com

ଚନ୍ଦ୍ର ପ୍ରତିମା ପ୍ରାୟେ ବପୁ ସୁନ୍ଦର
ଚମ ଭିତରେ ଦେଖ କି ନାରଖାର ରେ ।
ଚର୍ମ ବେଢ଼ିଛି ସିନା ଚଉରଷିକ
ଚର୍ବି ରୁ ଦଅ ନୀଳଗିରିବାସୀଙ୍କୁ ରେ । ୬ ।
ଛାର ଦେହକୁ ମନ କରନ୍ତୁ ସଜ
ଛନ୍ଦ କପଟ ତେଜ ଗୋବିନ୍ଦ ଭଜ ରେ ।
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା
ଛ'ଖଣ୍ଡି କାଠ ହେବ ତୋ ପାଇଁ ଜୋଡ଼ା ରେ । ୭ ।
ଜମ ଯେ ନ ଜାଣଇ ବାଳୁତ ଯୁବା
ଜାଇବୁ ବୋଲି ମନେକରନ୍ତୁ ଅବା ରେ;
ଜଣେ ହେଁ ଏଥେ କେହୁ ନାହିଁ ଅମର
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାର ରେ । ୮ ।
ଝୋଲା କନ୍ଥା ପାଗ୍ରେଡ଼ା ପିନ୍ଧାକୁ ରଖୁ
ଝାଡ଼ ସଂସାରେ ମନ ନ ବୁଝି ପଶୁ ରେ ।
ଝୁଣ୍ଟି ପଡ଼ିଲେ ଉଠିପାରିବୁ ନାହିଁ
ଝିଙ୍ଗଲା ପତ୍ର ବୃକ୍ଷେ ଲଗିଛୁ କାହିଁ ରେ । ୯ ।
ଞଣୀ ଦିବସେ ଅସ୍ତ ନୋହୁନା ମନ
ଞଦ୍ରାରେ ଦେଖୁଅଛୁ ଯଥା ସ୍ୱପନ ରେ
ନ ଯିବେ ସଙ୍ଗେ କେହୁ ଯିବୁ ରୁ ଏକା
ନାମ ମାତ୍ର ଅଟଇ ପଥକୁ ସଖା ରେ । ୧୦ ।
ଟାଣ କରନ୍ତୁ ମନ ସବୁ ମୋହର
ଟଳିପଡ଼ିଲେ କେହୁ ନୁହେଁ କାହାର ରେ ।
ଟେଗ ଭିତରେ ଯେହ୍ନେ ଅପୂର୍ବ ନାସ୍ତି
ଟୋପ ଚଉଁଗ୍ର ଅଛୁ ତୋ ଦେହେ ପୂରି ରେ । ୧୧ ।
ଠିକେ ମୁଁ କହୁଅଛୁ କର ମୋ କଥା
ଠିକେ ତୋ ଦେହେ ଅଛୁ ଶୂନ୍ୟ ଦେବତା ରେ ।
ଠକଯିବୁଟି ଠକ ମୂଣ୍ଡ ପଡ଼ିଲେ
ଠିକେଣ ଗୁରୁଯେବା କର ରୁ ଭଲେ ରେ । ୧୨ ।
ଡାକ କହୁଛୁ ମନ ଡାକ ଗୋବିନ୍ଦ
ଡର ଜଞ୍ଜାଳ ଯାଉ ତୋହର ଦ୍ୱନ୍ଦ ରେ ।
ଡେରିଅଛନ୍ତି ଶ୍ରବଣ ଭକ୍ତ ଡାକକୁ
ଡଙ୍ଗା ଯେହ୍ନେ ଜଳରେ ସୁହାଁ ପଛକୁ ରେ । ୧୩ ।

Digitized by srujanika@gmail.com

ଢୋଲ ଯେସନେ ଢାଉଁଢାଉଁ ବାଜଇ
ଛଟିଲେ ତହିଁ ଭିତରେ କିଛି ହିଁ ନାହିଁ ରେ ।
ତାଙ୍କି ଭଳିଛୁ ଦେହ ପ୍ରକୃତି ତୁଚ୍ଛ
ଜଳପଡ଼ିଲେ ସବୁ ହେବଟି ମିଛ ରେ । ୧୪ ।
ଏଣେ ତୁ ଦେଇଥିଲେ ତେଣେ ପାଇବୁ
ଅଣ ଆସୁଛ ବେଳେ କ'ଣ ଦେଣ ପିବୁ ରେ
ଅଣ-ଦାଃଶ୍ୱାମୀ ହୋଇ ରହିବୁ ଯବେ
ଅନେକ ଦୁଃଖ ଦେବେ ଯମ ଭୁବନେ ରେ । ୧୫ ।
ତୁ ଯେ ବୋଲୁ ମୋହର ଅର୍ଜିବା ଧନ
ତୋ ଦେହ ନୋହେ ତୋର ଦେଖ ଏ ମାନରେ ।
ତୋହର ସଙ୍ଗୁ ମନ ଗଲେଣି କେତେ
ତୁ ମିଥ୍ୟା କଥାକୁ ତ ଯାଉ ଧରତେ ରେ । ୧୬ ।
ଥିଲେ ଏ ସଂସାରେ ଯେତେ ନୃପତି
ଅସ୍ତ କରବେ ଭୋଗ କଲ ଏ ପୃଥ୍ୱୀ ରେ;
ଯୋଇଲା ଧନ ତୋର ଖଣ୍ଡ ଖାଇବେ
ଆନେ ତୋହର ଘର କରି ରହିବେ ରେ । ୧୭ ।
ଦେହେ ପୂରଛୁ ତୋର ଅଶେଷ ରୋଗ
ଜନା ବୁଝନେ ସିନା ଏ ସୁଖଭୋଗ ରେ ।
ଦଣ୍ଡେ ହେ କେହି ତୋତେ ରଖିବ ନାହିଁ
ଦଣ୍ଡୁ ଯେ ଥିବ ଯମ ଡଗର ନେଇ ରେ । ୧୮ ।
ଧର୍ମ ଅଧର୍ମ କଥା ନ ଜାଣୁ ତୁହି
ଧନ୍ଦ ହେଉଛୁ ଧନ ଅର୍ଜିବା ପାଇଁ ରେ ।
ଧୋକା ରହିଲେ ଧନ୍ଦା ମିଟିବ ନାହିଁ
ଧର୍ମରେ ଆତଯାତ ହେଉଛୁ ମହି ରେ । ୧୯ ।
ନନ୍ଦିତ କର୍ମ କଲେ ନନ୍ଦା ପାଇବୁ
ନରକେ ପଡ଼ି କେତେ ଦୁଃଖ ସହିବୁ ରେ ।
ନମିଷେ ମାତ୍ରେ ମୁଖେ ନ ବୋଲୁ ହରି
ନାଶ ହେଉଛୁ କମା ଅଛୁ ଆବୋର ରେ । ୨୦ ।
ପାହିଲେ ନିଶି ଯେହ୍ନେ ରବି ଉଦୟ
ପଦ୍ମକୋଚନ ସବୁ ଦେହେ ଉଦୟ ରେ ।
ପ୍ରଭୁଙ୍କ ଆଶ୍ରେ କର ତରିବୁ ଯେବେ
ପାଦପଦ୍ମରେ ଚିତ୍ତ ଦିଅ ତୁ ଏବେ ରେ । ୨୧ ।

Digitized by srujanika@gmail.com

ଫୁଲ ଯେସନେ ଫୁଲେ ଫୁଲେ ବହୁରେ
ଫୁଲ ସମୀରେ ଆଉ ନ ଦଶେ ଭାଗ ରେ
ଫଳ ସସାରେ ଲାଭ ହରଭଜନ
ଫାଶ ଗଳାକୁ କମ୍ପା କରୁଛୁ ଧନ ରେ । ୧୨ ।
ବେଳକୁ ବେଳ ତୋତେ କହୁଛୁ ମୁହିଁ
ବାନ୍ଧିଣ ନେବ ଯମ କି ଦୁଃଖ ଦେଇ ରେ
ବକଳେ କାନ୍ଦୁଥିବୁ ଆକୁଳ ହୋଇ
ବେଳଥୁଁ ଆଗ୍ରେ କରି ଭଜ ଗୋସାଇଁ ରେ । ୧୩ ।
ଭେଳା ବୁଡ଼ିବ ହେଲା କଲେ କହୁଛୁ
ଭଙ୍ଗା ନାବରେ କେବା ସିନ୍ଧୁ ତରିଛୁ ରେ
ସ୍ୱବଳୁ ନିକଟ ସେ ଅଶ୍ୱବେ ଦୂର
ଭକତ ଦାସ କହେ ଜୀବନ ସ୍ଥିର ରେ । ୧୪ ।
ମିଥ୍ୟା ମାୟା ସଂସାର ନୋହେ କାହାର
ମଲ ବୋଲିଣ ଦନେ ପଡ଼ିବ ଦୂର ରେ ।
ମଶ୍ମ ଭିତରେ କେହ ରହିବେ ନାହିଁ
ମଲ ବୋଲି କାନ୍ଦୁଛୁ ମଣବ ଦ୍ରୁହ ରେ । ୧୫ ।
ଜନମ ହେଲେ ପ୍ରାଣୀ ଅବଶ୍ୟ ମର
ଯଶ ରଖିବୁ ତେବେ ଭଜ ଶ୍ରୀହରି
ଯମ ବାନ୍ଧନେବଟି ହେବୁ ମେଲାଣି
ଜଗନ୍ନାଥ ମହିମା ଏଡ଼ିକ ଜାଣି ରେ । ୧୬ ।
ରଙ୍ଗ ପଦସ୍ୱ ସିନା ଭବସାଗର
ରଙ୍ଗ ଭିତରେ ଅଛୁ କି ନାରଖାର ରେ ।
ରୂପ ପ୍ରତିମାକୁ ତୁ ପରତେ ନ ଯା
ରଖିବେ ନାହିଁ କେହ ରଜା ପରଜା ରେ । ୧୭ ।
ଲୋଚନେ ଦେଖି କର୍ଣ୍ଣେ ଶୁଣୁଛୁ ନିତ
ଲୋଭ କର ଅଙ୍କୁ ଧନସମ୍ପତ୍ତି ରେ ।
ଲୋଭଟି ସବୁ ନାଶ କରଇ ମନ
ଲୋଡ଼ିଲେ ନ ପାଇବୁ ଆଉ ଜୀବନ ରେ । ୧୮ ।
ବୃଥାରେ କହୁଅଛୁ ଦୁର୍ଲ୍ଲଭ ଦେହ
ବୃଥସ୍ଥାବସେ ଆଉ ନ ବଳା ସ୍ନେହ ରେ ।
ବୃକ୍ଷସିବୃତି ମୂଳ ଲଭ ସରବ
ବେଳଥୁଁ ଆଗ୍ରେ କରି ଭଜ ମାଧବ ରେ । ୧୯ ।

Digitized by srujanika@gmail.com

ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ମନ
ମରିଲେ ନ ପାଇବୁ ଆଉ ଜୀବନ ରେ ।
ଶ୍ରୀକୃଷ୍ଣ ନାମକୋଟି କର ଭଜନ
ଶ୍ରୀକୃଷ୍ଣପାଦପଦ୍ମେ କର ତୁ ଧ୍ୟାନ ରେ । ୩୦ ।
ସନ୍ତୋଷ ଚିତ୍ତେ ତୁହି ହରିଙ୍କୁ ଭଜ
ସଂସାରେ ପଡ଼ି ଆଉ ନ ପାଅ ଲଜ ରେ ।
ସବୁଟି ମିଛ ହରି ନାମଟି ସତ
ଶ୍ରୀକୃଷ୍ଣପାଦପଦ୍ମେ ଦିଅ ତୁ ଚିତ୍ତ ରେ । ୩୧ ।
ସତ୍ୟ ମଣିକୁ ତୁହି ଭବ ସାଗର
ପରିଯାଉଛୁ ପରମାତ୍ମୁ ତୋହର ରେ ।
ସନ୍ତୋଷ ହୋଇ ଭଜ ଦୃଢ଼େ ଶ୍ରୀହରି
ଶୋକସାଗରୁ ଯେବେ ହୋଇବୁ ପାରି ରେ । ୩୨ ।
ଦୃଢ଼ଲେ ଯେତେ ଜନ ହରି ନାମକୁ
ସ୍ନାନଗଢକୁ ଗଲେ ବୁଡ଼ି ତଳକୁ ରେ ।
ହଜିଲେ ଦେହ ଆଉ ପାଇବୁ ନାହିଁ
ହାଟ ବସାଉଥିବେ ତୋ ଦେହ ପାଇଁ ରେ । ୩୩ ।
ଷସ୍ପୂ ଦୁର୍ଲଭ ଦେହ ହୋଏ ଆୟୁଷ
ଷସ୍ପୂ ନ ଯିବ ନାମ ହୃଦରେ ଘୋଷ ରେ,
ସ୍ଥିର ଦେହକୁ ମନ ନ ଯା ବିଶ୍ୱାସ
ସ୍ଥିର ଦୁରିଛି କହେ ଭଜତ ଦାସ ରେ । ୩୪ ।



Digitized by srujanika@gmail.com

# ମାଗୁଛି ଶରଧା ବାଲିରୁ ହାତେ

**ବନମାଳୀ ଦାସ**

[ ଓଡ଼ିଆ ପଦାବଳୀ ସାହିତ୍ୟର ପ୍ରସିଦ୍ଧ ଗୀତକାର ଭାବରେ ସୁନାମଧନ୍ୟ । ସେ ଅଷ୍ଟାଦଶ ଶତକରେ ଜନ୍ମଗ୍ରହଣ କରିଥିଲେ । ସୁମଧୁର ରସଗର୍ଭିତ ପଦାବଳୀର ରଚୟିତା ଭାବରେ ତାଙ୍କର ପ୍ରତିଷ୍ଠା ରହିଛି । ତାଙ୍କର ଅନ୍ୟ ରଚନା ମଧ୍ୟରେ 'ଗୀତ ଇଚ୍ଛାବତୀ' ଓ 'ରାସ' ପ୍ରଧାନ । ]

ଜଗନ୍ନାଥ ହେ କିଛି ମାଗୁ ନାହିଁ ମୁଁ ତୋତେ
ଧନ ମାଗୁ ନାହିଁ, ଜନ ମାଗୁ ନାହିଁ,
ମାଗୁଛି ଶରଧା ବାଲିରୁ ହାତେ । ଘୋଷା ।
ଆନ ଦରଶନ ନ ଲୋଡ଼େ ନୟନ ଏକା ତୁମ୍ଭ ଦେଖା ବିନା
ଶୁଣିବାକୁ କାନ ନଇଚ୍ଛଇ ଆନ ତୁମ୍ଭ ଚରିତେ ବାସନା । ୧ ।
ଜିହ୍ୱା ନ ବାଞ୍ଛଇ ଗ୍ରାମ୍ୟଗୀତ ଗାଇବାକୁ ରଜନୀ ଦିବସ
ତୁମ୍ଭ ନାମାବଳୀ କେବଳ ସଙ୍ଗୀ ହୋଇଥାଉ ପୀତବାସ । ୨ ।
ନାସା ମୋର ତୃପ୍ତି ନ ଲଭଇ ଆନ ସୁବାସ ଦ୍ରବ୍ୟ ଆଘ୍ରାଣେ,
ତୁମ୍ଭ ଛଡ଼ାମାଳ ତୁଳସୀ କୁସୁମ ଚନ୍ଦନ କର୍ପୂର ଘ୍ରାଣେ । ୩ ।
ମୋ ହସ୍ତ ଅଙ୍ଗୁଳି ଗଣ ବନମାଳି, ହରେକୃଷ୍ଣ ଜପୁଥାଉ
ବୋଲେ ବନମାଳୀ ମୋ ବେନି ଚରଣ ତୋ ତୀର୍ଥ ଭ୍ରମଣେ ଥାଉ । ୪ ।



Digitized by srujanika@gmail.com

# ଅନୁସରତ

·ଗୋପାଳକୃଷ୍ଣ ପଟ୍ଟନାୟକ

[ ଗୋପାଳକୃଷ୍ଣ ପଟ୍ଟନାୟକ ୧୭୮୫ ଖ୍ରୀ ରେ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ବନବାସୀ ପଟ୍ଟନାୟକ, ମାତାଙ୍କ ନାମ ଲକ୍ଷତା । ସଙ୍ଗୀତ ରଚୟିତା ଭାବରେ ସେ ସୁପ୍ରସିଦ୍ଧ । 'ଗୋପାଳକୃଷ୍ଣ ପଦାବଳୀ'ର ସାଙ୍ଗୀତିକ ମୂର୍ଚ୍ଛନା ଓ ସ୍ୱରସ୍ୱଗିଣୀ ଉତ୍କଳର ପୁରପଲ୍ଲୀରେ ଝଙ୍କୃତ ଓ ଅନୁରଣିତ । ଖ୍ରୀ. ୧୮୫୬ ରେ ତାଙ୍କର ମୃତ୍ୟୁ ଘଟିଥିଲା । ]

ଅନୁସରତ, ପ୍ରଭୋ ! କାଳଯାକ ଗଲା ସରତ,
କଣ ବିଚାରଣ କଲେ କେତେ ଘୃଣା ହୃଅନ୍ତା କରୁଣା ସରତ ? (ପଦ)
ଅଶରଣ ଜନ ବନ୍ଧୁ ପଣ ଯଶ ସଂସାରେ ହୋଇଛୁ ହଦତ
ପଥର ହୋଇ ପଥରେ ପଡ଼ିଥିଲା ଅହଲ୍ୟାକୁ ଦେଲ ତାରତ । ୧ ।
ପାଞ୍ଚାଳିକି ଦୁଃଶାସନ ଘଞ୍ଚାଳିଲା ବଢ଼ାଇଲ ବାସ ଦେଇ ତ,
ଘୁଞ୍ଚାଇଲ ନାହିଁ ମୋ ଗୁରୁ ବଦନ ପୋଚ୍ଛାଇଲ ନେତ୍ର ବାରି ତ । ୨ ।
କାହିଁ ଥିଲା ଚନ୍ଦ କାହିଁ ଥିଲା ନନ୍ଦ ପଲକ ପତନ ନୋହୁ ତ,
ଛୁଡ଼ିଗଲା ମଥା ରହିଗଲା କଥା ଡାକିଲା ମାତ୍ରକେ କଷ୍ଟ ତ । ୩ ।
କାଳକିଙ୍କର ଭୟରେ ଅଜାମିଳ ପୁତ୍ରୋପଚାରରେ ଡାକ ତ
ପରମ ପଦ ପାଇଲା ଆପଣଙ୍କ ନାମ ମହିମା ଏପରି ତ । ୪ ।
ନିରୁପାଧି କୃପା କର ବୋଲି ବିଧି ଭବାଦରେ ଥାଉ କଥିତ
ମୁଁ କଲା ଦୋଷ କି ନାଶିଛୁ ତ ବଣ୍ଡା ବିଷ ପିଆଇ ତା ଦୂରତ । ୫ ।
ଗୋପାଳକୃଷ୍ଣ କହେ ଜଗନ୍ମଙ୍ଗଳ ଯାହା କରିବ ତୁମ୍ଭ ଚରିତ,
ଆପଣା ଦୟାଳୁ-ପଣକୁ ବଳି ମୋ ଦୁଷ୍କୃତ ନୁହଇ ସରି ତ । ୬ ।



Digitized by srujanika@gmail.com

# ଜଗତେ କେବଳ

କବିସୂର୍ଯ୍ୟ ବଳଦେବ ରଥ

[ ପ୍ରାଚୀନ ଓଡ଼ିଆ ସାହିତ୍ୟରେ କବିସୂର୍ଯ୍ୟ ବଳଦେବ ରଥ ଅନ୍ୟତମ ଅବିସ୍ମରଣୀୟ ପ୍ରତିଭା । ସେ ଖ୍ରୀ: ୧୭୮୯ରେ ବଡ଼ଖେମଣ୍ଡିରେ ଜନ୍ମଗ୍ରହଣ କରିଥିଲେ । ସେ ଏକାଧାରରେ ଜଣେ କବି, ସଂସ୍କୃତଜ୍ଞ, ସୁପଣ୍ଡିତ, ସଙ୍ଗୀତଜ୍ଞ ଓ ଗାୟକ । ତାଙ୍କ ରଚନାବଳୀ ମଧ୍ୟରେ 'ଚନ୍ଦ୍ରକଳା', 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ', 'ରତ୍ନାକର ଚମ୍ପୂ', 'ହାସ୍ୟକଲ୍ଲୋଳ', 'କବିତା କଲ୍ଲୋଳିନୀ' ପ୍ରଧାନ । ତାଙ୍କର ୧୮୪୫ ଖ୍ରୀ:ରେ ତାଙ୍କର ମୃତ୍ୟୁ ଘଟିଲା । ]

ଜଗତେ କେବଳ ଜନେ ହସିବେ ଏହି ତହୁଁ ଫଳ । ଘୋଷା ।
ଜଟିଳ କରି ସ୍କନ୍ଧ ରୋମରାଜି । ସିଂହର ଦର୍ପରେ ମରୁ ଗରଜି ।
କୁଟିଳ କରି ଭ୍ରୂକୁଟୀକୁ ସିହୁଁ । ସରମା କଣ୍ଠୀରବ ହେବ କାହୁଁ ?
ଅଳିକୁଳ ଦିବ ନୟନେ ବୋଳି । ରସାଳ ଗହଳ ଶାଖାରେ ଖେଳି ।
କବଳ କରୁ ତା କଳି କଳାପ । କାକ କି କରିବ ପଞ୍ଚମାଳାପ ?
ବରଜୀବ ରସେ ଦେଇ ମାନସ । ବରଜ ବରଷେ ଅମେଧ୍ୟ ଗ୍ରାସ ।
ଦେହେ ମନ୍ଦାକିନୀ ରଜ ଲଗାଇ । ଗ୍ରାମ ଶୂକର କି ହୋଇବ ଗାଈ ?
ଚଞ୍ଚୁ ଚରଣେ ଲଗାଇ ହିଙ୍ଗୁଳ । ନିଜ ତୁଣ୍ଡେ ମଣ୍ଡି ଖଣ୍ଡ ମୃଣାଳ ।
ସ୍ୱଳ୍ପେ ପୁଙ୍ଖଅଙ୍ଗ ବୁଲଇ ବକୀ । ତେବେ ସେ ମରାଳ ହୋଇବ ଟିକି ?

* * *

ଯାହାକୁ ଯାହା କରିଛି ଦଇବ । ତହୁଁ କି ସେ ଅନ୍ୟଥା ହୋଇବ ।
ଘେନିଲେ ହେଲେ ଯତ୍ନେ କୋଟି ପୁଟ । ପିତ୍ତଳକିଟି କେବେ ହେବ ପୁରଟ ?
ଦେବ ଉପବନେ ହୋଇ ଜନିତା । ସୁବାସ ମଦରୁ ବିଷଲତା ।
ତୁଳସୀ ତୁଲେ ହେଲେ ମିଶାମିଶି । ତାହାକୁ ଯେବେ ବୋଲିବା ତୁଳସୀ ?
ସମଜାଇ କାହିଁ ପ୍ରଜାତ ସ୍ୱସା । କହିଲେ ଯେ ହୁଅଇ ଲୋକହସା ।
ଜଡ଼ ମୁଁ ବୋଲି ନ ଜାଣି ନିବେଦ । ଷଡ଼ଦର୍ଶୀ ତୁଲେ କଲେ ବିବାଦ ।
ଜଗତେ କେବଳ ଜନେ ହସିବେ ଏହି ତହୁଁ ଫଳ ।



Digitized by srujanika@gmail.com

# ଶରୀରତତ୍ତ୍ୱ ଜ୍ଞାନ

**ଭୀମ ଭୋଇ**

[ ଭୀମଭୋଇ ମହିମାଧର୍ମର ମହନ୍ତ ପ୍ରମୁଖ କରାଯାଇଛନ୍ତି । ସେ ୧୮୫୫ ଖ୍ରୀ:ରେ ରେଢ଼ାଖୋଲରେ ଜନ୍ମଗ୍ରହଣ କରିଥିଲେ । ଦୁଃଖକଷ୍ଟରେ ସେ କାଳାତିପାତ କରିଥିଲେ । ଆଦିବାସୀ କବି ଭାବରେ ଭାରତରେ ତାଙ୍କର ସ୍ଥାନ ଅଗ୍ରଗଣ୍ୟ । ତାଙ୍କର ରଚନାବଳୀ ମଧ୍ୟରେ 'ସ୍ତୁତି ଚିନ୍ତାମଣି', 'ଶ୍ରୁତି ନିଷେଧ ଗୀତା', 'ବ୍ରହ୍ମନିରୂପଣ ଗୀତା' ପ୍ରଧାନ । ]

ଶୁଣ ସଧୀରେ ଭକ୍ତବୀର ।
କହିବା ଶରୀରର୍ଥ ସାର ॥
ବ୍ରହ୍ମା ଯେ ନାଭି କମଳରେ ।
ବାସ ତା ହୃଦସ୍ଥ ମଣ୍ଡଳେ ॥
ସେଠାରୁ ଝରୁଛି କଳ୍ପଣା ।
ମନ ପବନ ଯୋଗ ବିନା ॥
ଘଟରେ ବ୍ରହ୍ମାଙ୍କୁ ଚହ୍ନିଲେ ।
ଫଳ ସମ୍ପୂର୍ଣ୍ଣ ହୋଏ ଭଲେ ।
ଶରୀରାର୍ଥ କୁ ଯେ ନ ଜାଣି ।
ବାହାରେ ଭ୍ରମି ମରେ ପ୍ରାଣୀ ॥
ହୃଦ-କମଳେ ଜଗନ୍ନାଥ ।
ସ୍ୱରୂପ ବୁଝ ହେ ଭଗତ ॥
ଲକ୍ଷ୍ମୀଙ୍କ ସଙ୍ଗତରେ ଯେହ ।
ବାସ ତା ହୃଦସ୍ଥ ମୂର୍ଦ୍ଧନ ॥
କଳ୍ପବଟରେ ଅଛୁ ରହି ।
ନୀଳକନ୍ଦର ତାକୁ କହି ॥
ଷାଠିଏ ଗୁଣ୍ଡା ଭୁଞ୍ଜୁ ଅଛୁ ।
ସେହିଟି ଷାଠିଏ ପଦ୍ଧତି ॥
ଏହି ପ୍ରକାରେ ଭକ୍ତବୀର ।
ଏହି ଶରୀରେ ଭେଦକର ॥



Digitized by srujanika@gmail.com

# ଭଗ୍ନ ଶିବ ମନ୍ଦିର*

**ଫକୀର ମୋହନ ସେନାପତି**

[ ଫକୀରମୋହନ ସେନାପତି ନବଯୁଗରେ ଓଡ଼ିଆ ସାହିତ୍ୟର ଏକ ଅବିସ୍ମରଣୀୟ ପ୍ରତିଭା । ସେ ଓଡ଼ିଆ କ୍ଷୁଦ୍ରଗଳ୍ପର ଜନକ ଏବଂ ଓଡ଼ିଆ ଉପନ୍ୟାସର ଆଦିପର୍ବର ଶ୍ରେଷ୍ଠ ପ୍ରତିଭା । କଥା ସାହିତ୍ୟର ରଚୟିତା ରୂପେ ସେ ବିଶେଷ ମର୍ଯ୍ୟାଦାର ଅଧିକାରୀ ହୋଇଥିଲେ ହେଁ, ପଦ୍ୟ ରଚନାରେ ମଧ୍ୟ ସେ କୃତିତ୍ୱ ଅର୍ଜନ କରିଛନ୍ତି । ସେ ବାଲେଶ୍ୱର ଜିଲ୍ଲାର ମଲ୍ଲିକାଶ ପୁର ଠାରେ ୧୮୪୩ ଖ୍ରୀ: ରେ ଜନ୍ମ ଗ୍ରହଣ କରିଥିଲେ । ୧୯୧୮ ଖ୍ରୀ: ରେ ତାଙ୍କର ଦେହାନ୍ତ ଘଟିଥିଲା ।

ତାଙ୍କର ରଚନାବଳୀ ମଧ୍ୟରେ ଛମାଣ ଆଠଗୁଣ୍ଠ, ମାମୁଁ, ପ୍ରାୟଶ୍ଚିତ, ଲଛମା, ଗଳ୍ପସ୍ୱଳ୍ପ (ପ୍ରଥମ ଓ ଦ୍ୱିତୀୟ ଭାଗ), ବୌଦ୍ଧାବତାର କାବ୍ୟ, ଅବସରବାସରେ ପ୍ରଭୃତି ପ୍ରଧାନ । ତାଙ୍କର ଆତ୍ମଜୀବନ ଚରିତକୁ ଓଡ଼ିଶାର ସମକାଳୀନ ସାଂସ୍କୃତିକ ଇତିହାସ ଭାବରେ ଅଭିହିତ କରାଯାଇପାରେ । 'ଭଗ୍ନ ଶିବ ମନ୍ଦିର' କବିତାଟି ଉତ୍କଳ ସାହିତ୍ୟ ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟାରୁ ସଂଗୃହୀତ । ]

ବୋଲ ଶିବାଳୟ ବୋଲ ସ୍ୱରୂପ
କେ କଲା ଏ ରୂପ କୁତ୍ସିତ ରୂପ ।
ନିର୍ଜନ ପ୍ରାନ୍ତରେ ରହିଛୁ ବସି
ନାହିଁ ତ ଗୌରବ ପୂର୍ବର ଶୋଭା ।
ପୂଜା ପାଇଁ ଶଙ୍କରଙ୍କୁ,
କେବେ କେହି ଭକ୍ତ ସେବା ଅନୁରକ୍ତ
ଆସୁଥିଲେ ଏ ସ୍ଥାନକୁ ?

—୨—

ତୋ ଦେହରୁ ଚୂନ ଗଲାଣି ଛାଡ଼ି,
ବଟ ବୃକ୍ଷ ଚେର ଯାଉଛି ମାଡ଼ି ।
ବାଜୁଥିଲା ଯହିଁ ଘଣ୍ଟା କଂସାଳ,
ଏବେ ରାବୁଛନ୍ତି ପେଚା ଶୃଗାଳ ।
ଥିଲେ ଯହିଁ ଭକ୍ତମାନେ,
ଭୀଷଣ ଭୁଜଙ୍ଗେ ଫେଣା ଟେକି ରଙ୍ଗେ
ଖେଳୁଛନ୍ତି ସେହି ସ୍ଥାନେ ।

---

* ହାଟ ସମ୍ମୁଖରେ କାଠଯୋଡ଼ି ଦଣ୍ଡା ଦକ୍ଷିଣ କୂଳରେ ଅବସ୍ଥିତ ମୁକ୍ତେଶ୍ୱର ଭଗ୍ନ ଶିବ ମନ୍ଦିର । ଲଛମନ ହାକେରା ଏହି ମନ୍ଦିର ନିର୍ମାଣ କରାଇଥିଲେ ।

Digitized by srujanika@gmail.com

—୩—

ଶିବ ଚତୁର୍ଦ୍ଦଶୀ ନିଶିରେ ବସି
ଦୀପାବଳୀ ଜାଳି ଗ୍ରାମ ରୂପସୀ
ହୁଳହୁଳି ଦେଇ ଶଙ୍ଖ ବଜାଇ
ବସିଥାନ୍ତ ହଜାରରେ ଥାଇ
କରୁଥିଲେ କଣାବଣା,
ଚଣା ଭଜା ଚୁଡ଼ା ମିଠାଇ ଝଗୁଡ଼ା
ଦୋକାନୀ ଭରି ଜାବଡ଼ା ।

—୪—

ପ୍ରତିଦିନ ଆସୁଥିଲା ତ ମାଳୀ,
ଶମ୍ଭୁଶିରେ ଜଳ ଦେବାକୁ ଢାଳି ।
ଚମ୍ପାଫୁଲ ବେଲପତ୍ର ଚଢ଼ାଇ,
ଭକ୍ତ ମନୋବାଞ୍ଛା ପୂରଣ ପାଇଁ ।
ଏବେ କି କେ ଆସେ ଅରେ !
ସମ୍ପଦ ବେଳରେ ଲୋକେ ସମାଦରେ
ନ ପଚ୍ଛରେ ବିପଦରେ ।

—୫—

ଆଗେ ଥିଲା ଶୋଭା ପବିତ୍ର ସ୍ଥାନ,
ଏବେ ଜନଶୂନ୍ୟ କୀର୍ତ୍ତି ଶ୍ମଶାନ ।
ଆହେ କୀର୍ତ୍ତିମନ୍ତ ଦେଖ ତ ଆସି,
କି କଲଣି କାଳ କୀର୍ତ୍ତି ବିନାଶି ।
ପବିତ୍ର ଶୋଭା ଭଣ୍ଡାର,
ସେ କାଳ କରାଳ ସ୍ୱର୍ଗ ଦେବଶାଳ
କଲଣି ଯେ ଛାରଖାର ।

—୬—

ପଡ଼ିଛୁ ଦେଉଳ ପଥର ଚୂର୍ଣ୍ଣି
ପକାଇଛୁ କାଳ ଦାନ୍ତରେ ଚୂର୍ଣ୍ଣି ।
"ମହିମ୍ନଃ ପାରନ୍ତେ—" ସ୍ତବ ବ୍ରାହ୍ମଣେ
ପଢ଼ି ତୋଷୁଥିବେ ଭକତ ଗଣେ ।
କାହାନ୍ତି ସେ ବିପ୍ରବରେ,
ଦେଉଳ ଫାଟରେ ବାସ୍ତୁ ପକ୍ଷୀ ଖରେ
ଶୁଣାଉଛି ମନ୍ଦ ସ୍ୱରେ ।

Digitized by srujanika@gmail.com

—୭—

ଘାଟ ନାଉରିଏ ତୋତେ ଅନାଇ,
ଆସନ୍ତି ପୂର୍ବାଶ୍ର ନାଆକୁ ବାହି ।
ଏବେ ସେମାନଙ୍କୁ ମାଡ଼ୁଛି ଡର,
ନାଏ ବାଜିବ ବା ଭଙ୍ଗା ପଥର
ଜଗତରେ ଏହି ଖ୍ୟାତ,
ଭରସା ଅନେକ ଥିଲା ଯେଉଁ ଲୋକ
ମଲେ ହୁଏ ଭୂତଖ୍ୟାତ ।

—୮—

ମୋ ଦେହ ସମସ୍ତି ମାଂସ ଶୋଣିତ
ମାଙ୍କଡ଼ା ପଥରେ ଥିଲୁ ନିର୍ମିତ ।
ତୋହର ଦଶା ଦେଖି ମାଡ଼ୁଛି ଡର,
କାଳ ମୁଖେ ମୁହିଁ କେତେ ମାତର ।
ଥିଲୁ ମୃତ୍ୟୁଞ୍ଜୟ ସ୍ଥାନ,
ସେହି ମୁଖସ୍ଥାଇଁ ଖସିଗଲେ କାହିଁ
କେ ରଖିବ ତୋର ମାନ ।

—୯—

“ଅଷ୍ଟ କୁଳାଚଳ ସପ୍ତ ସମୁଦ୍ର”
“ବ୍ରହ୍ମ ପୁରନ୍ଦର ମାର୍ତ୍ତଣ୍ଡ ରୁଦ୍ର”
ତୁମ୍ଭେ ଅମ୍ଭେ କେହି ରହିବା ନାହିଁ
ଏତେ ହିଂସା ଦ୍ୱେଷ ତେବେ କାଁ ପାଇ ।
ଦେଖ ଚାହିଁ ନିଦର୍ଶନ
କାହିଁ ଶିବାଳୟ ପର୍ବତ ଆଳୟ
କାହିଁ ଗଲେ ଲକ୍ଷ୍ମଣ ।



Digitized by srujanika@gmail.com

# ପୁଷ୍ୟାଭିଷେକ

**ରାଧାନାଥ ରାୟ**

[ କବି ରାଧାନାଥ ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରୂପେ ସୁପରିଚିତ । ସେ ୧୮୪୮ ଖ୍ରୀ.ରେ ଜନ୍ମ ଗ୍ରହଣ କରିଥିଲେ । ୧୯୦୮ ଖ୍ରୀ ରେ ତାଙ୍କର ଦେହାବସାନ ଘଟିଥିଲା । ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ନବଚେତନାର ବାହକ ରୂପେ ତାଙ୍କର କୃତିତ୍ୱ ସର୍ବଜନ ବିଦିତ ।

ତାଙ୍କର ରଚନାବଳୀ ମଧ୍ୟରେ 'ଚନ୍ଦ୍ରଭାଗା', 'ଚିଲିକା', 'ଦରବାର', 'ଉଷା', ମହାଯାତ୍ରା ପ୍ରଧାନ । 'ପୁଷ୍ୟାଭିଷେକ' ତାଙ୍କର ଚନ୍ଦ୍ରଭାଗା କାବ୍ୟରୁ ସଂଗୃହୀତ ।]

ଅଭିଷେକୋତ୍ସବ ବର୍ଣ୍ଣନ
ଆହେ ସିଂହ ଦୁଆରେ
ବଜେ ଅଜ ଦେବ-ଦେବୀଏ
ଯେଷ୍ଟା ପୁଜା ସମ୍ଭାରେ ।
କେତେକୀ-କାନନ-ସଙ୍କୁଳ
ରମ୍ୟ ସିକତା ସ୍ଥଳ
ଗୁଣ୍ଡ ହରଚଣ୍ଡୀ ଆଗତ
ଆଜ ଶ୍ରୀନୀଳାଚଳ ।
ଭଗବତୀ ବାଣପୁରରୁ
ଉପନୀତ ସ୍ୱଗଣେ,
ଶୋଲେଶ୍ୱ ଦେଖଇ ସ୍ୱମୁଖ
ଯହିଁ ହ୍ରଦଦର୍ପଣେ ।
ପ୍ରଭାମଣ୍ଡଳରେ ମଣ୍ଡିତ
ତନୁ କନକ ଗୋରୀ,
ତୈଲଙ୍ଗୀ ବସନ ଭୂଷଣେ
ପୁଣି ଦଣଇ ଚୋରୀ ।
ହସ୍ତ ସେ ଭୁବନଈଶ୍ୱରୀ
ହେମଗିରି ବାସିନୀ,
ଏକାମ୍ର କାନନ-ଦେବତା
ବନ ପୁଷ୍ପ ଶୋଭିନୀ ।

Digitized by srujanika@gmail.com

ନରେନ୍ଦ୍ର ମଣ୍ଡଳ କୁସୁମ-
ରେଣୁ-ରକ୍ତ-ଚରଣା,
ମୈନାକ ଶିଖର ବାସିନୀ
ରଣପୁର-ମଣ୍ଡନା ।
ନାୟକ-ଅର୍ଚ୍ଚିତ ଚର୍ଚ୍ଚିକା—
ଦେବୀ ଧାର୍ମି-ଈଶ୍ୱରୀ,
ମହାନଦୀ କୂଳେ ଯାହାଙ୍କ
ଅଧିଷ୍ଠାନ ଶିଖରୀ ।
ମଣ୍ଡନ୍ତ ବଦନ ମଣ୍ଡଳ;
ଯେହ୍ନ ସଦା ସୁହାସେ
ସରଣ୍ଡା ଦର୍ପଣ ଅଂଶୁପା
ଶତଦଳ ପରଶେ ।
ବରୁଣୀ ଶଇଳ ଶିଖରେ
ପୁଣି ଯେହ୍ନ ବସନ୍ତ,
ଧୂଅନ୍ତ ଯାହାଙ୍କ ଚରଣ
ଝର ଲହରୀ ପନ୍ତ ।
ଏକାମ୍ରେ ସୁକାନ୍ତ ତନୁଜା
ଗୌର ଶୈଳ ବିହାର
ଗୁଡ଼ ଦେବୀ ଦ୍ୱାର ଚଣ୍ଡିକା
ବଜେ ସିଂହ ଦୁଆର ।
ହାଟକ-ଗହ୍ୱରୀ କଟକ-
ଚଣ୍ଡୀ ନାଗରୀ ବେଶେ,
ଅମଳ ରଜତ କୁସୁମ
ଶୋଭେ ଶ୍ୟାମଳ କେଶେ ।
ସଙ୍କଟ ତାରଣୀ ଝଙ୍କଡ଼
ଦେବୀ ସିଂହ ଶାରଳା
ଭଟ୍ଟ ବିକଟ କାକଟ-
ପୁର ମହାମଙ୍ଗଳା ।
ଚିଲିକା-ଲହରୀ ମାଳିକା
ଭେଦ ଗିରି ଉତ୍ଥିତ
ଚଉଦରେ ନୀଳ ଚଳିକା
ବକ୍ଷ ତରଙ୍ଗାପ୍ଲୁତ ।

Digitized by srujanika@gmail.com

ଚନ୍ଦ୍ରାଲୋକେ ସନ୍ଧି ଲଶୀପେ
ଜଳ ଦେବୀ ସଙ୍ଗୀତ,
ଶୁଣନ୍ତୁ ଚକିତେ ନାବିକେ
ଦୂରେ ବାହୁଁ ବୋଇତ ।
ଝାଲକାଇ ଦେବୀ ଆଗତ
ସ୍ତୁଣ୍ଡ ସେ ଗିମର୍କ୍ତା
ତଣଇ ପରମ ମଞ୍ଜୁଳା
ଶିରେ ତୈଳଙ୍ଗୀ ଜୁଡ଼ା ।
ମହୋଦଧି ଫେନ ପୁଞ୍ଜରୁ
ଜାତ ଯେତେ ଅପ୍ସରୀ,
ରମାଙ୍କର ବାଲ୍ୟ ସଙ୍ଗିନୀ
ସିନ୍ଧୁ ଶିଶୁ ସୁନ୍ଦରୀ ।
ସବିତା କୋଣାର୍କ ଦେବତା
ନବଗ୍ରହ ବେଷ୍ଟିତ
ମହା ତେଜଃପୁଞ୍ଜ ବିଗ୍ରହ
ସିଂହ ଦ୍ୱାରେ ଶୋଭିତ ।
ରଥ ରଥପଥ ସେ ଠାବେ
ଆସି ମିଳିଲେ ଶେଷେ
ଆଣିଥିଲେ ପୁଷ୍ପ ଭୂଷଣ
ସିନ୍ଧୁ ସୁତା ଆଦେଶେ ।
ରୂପ ରଚନାରେ ଲଭନ୍ତି
ଶିଳ୍ପ ସୀମା ଏ ଦେଶ
ଅବନୀରେ ଅବା ଉପମା
କହ କି ଦେବ ଶେଷ ?
ପ୍ରତିହାରୀ ଜୟ ବିଜୟ
ଛାଡ଼ିଦେଲେ ସରଣୀ
ପଛେ ଆସି ଆଗେ ପଶିଲେ
ସୁର ସୁର-ରମଣୀ ।
ସ୍ୱସ୍ତେ ସବଂଶ ଦେବଙ୍କ
ଗତି ଅପ୍ରତିହତ
ସ୍ପର୍ଶ ନ ଛୁଇଁଲେ ଏ କଥା
କହିଲେ ମର୍ମ ଆହତ ।

Digitized by srujanika@gmail.com

ମହୋତ୍ସବ ଯାଉ ସକଳେ
ସ୍ୱର୍ଗ ଦ୍ୱାରେ ମିଳଲେ
ଯେଝାପୁର ଯିବା ମାନସେ
ଜଳ ଯାନେ ଚଢ଼ିଲେ ।
ବେଗେ ଦେବ ଦେବୀ ସ୍ୱପୁରେ
ଗଲେ ନପାହୁଁ ଜଣି
ସିନ୍ଧୁଜାତ ଯେତେ ଅପ୍ସରୀ
ଗଲେ ତରଙ୍ଗେ ମିଶି ।



Digitized by srujanika@gmail.com

# ଶଙ୍ଖଧ୍ୱନି

ଭକ୍ତକବି ମଧୁସୂଦନ ରାଓ

[ ଭକ୍ତକବି ମଧୁସୂଦନ ରାଓ ୧୮୫୩ ଖ୍ରୀ:ରେ ଜନ୍ମଗ୍ରହଣ କରିଥିଲେ । ବ୍ରାହ୍ମଧର୍ମର ପୃଷ୍ଠପୋଷକ ଭାବରେ ସେ ଓଡ଼ିଶାରେ ସୁପରିଚିତ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଭାଷାରେ ସେ ବ୍ରହ୍ମଙ୍କ ମଧୁସୂଦନ । ଭକ୍ତକବି ରୂପେ ସେ ଓଡ଼ିଶାର ପ୍ରତି ଜନପଦରେ ସୁପରିଚିତ ।

ତାଙ୍କର ରଚନାବଳୀମାନଙ୍କ ମଧ୍ୟରେ ପ୍ରବନ୍ଧମାଳା, କୁସୁମାଞ୍ଜଳି, ବସନ୍ତଗାଥା, ଛାନ୍ଦମାଳା ପ୍ରଧାନ । 'ଶଙ୍ଖଧ୍ୱନି' ତାଙ୍କ ବସନ୍ତଗାଥାରୁ ସଂଗୃହୀତ । ]

— ୧ —

ପଶ୍ଚିମରେ ଚକ୍ରବାଳେ ବୁଡ଼ଇ ଭାସ୍କର
ପ୍ରଶାନ୍ତ ବନାନ୍ତେ ଛାୟା ଆବରେ ଅମ୍ବର ।
ନିଃଶବ୍ଦେ ଗମ୍ଭୀରେ ଧୀରେ ସନ୍ଧ୍ୟା ଶାନ୍ତିମୟୀ
ଶ୍ରାନ୍ତ ମହୀଶିରେ ଶାନ୍ତି ବାରି ବରଷଇ ।
ଦିବା ଅବସାନେ ଶ୍ରାନ୍ତ ମୂର୍ତ୍ତି ପାନ୍ଥ ଜନ
ଗୃହ ଧ୍ୟାନେ ଚାଲୁଅଛି ଚଞ୍ଚଳ ଚରଣ ।
ସହସା ସୁଦୂର ଗ୍ରାମେ ବାଜେ ଶଙ୍ଖଧ୍ୱନି
ସ୍ତମ୍ଭିତ ସେ ନାଦେ ଯେହ୍ନେ ନିଖିଳ ଅବନୀ ।
କ୍ଷଣେ କର୍ଣ୍ଣ ଡେରି ଆହା ସେ ସ୍ୱର ଲହରୀ,
ଶୁଣିଲି ମୁଁ ଆଚମ୍ବିତେ ସ୍ୱପ୍ନାବିଷ୍ଟ ପରି ।
ତହୁଁ ମହା ଜାଗରଣେ ଜାଗିଲା ମୋ ପ୍ରାଣ,
ଶୁଣିଲି ସେ ଧ୍ୱନି ମଧ୍ୟେ ମହାସିନ୍ଧୁ ତାନ ।
ଅନନ୍ତ ଅର୍ଣ୍ଣବ ଧ୍ୱନି ମହା ମହୋଦାର
ଅର୍ଣ୍ଣବ-ସମ୍ଭବ ଶଙ୍ଖେ କରୁଛି ହୁଙ୍କାର ।

— ୨ —

ମହା ଅର୍ଣ୍ଣବର ମହାପ୍ରଣବ ଝଙ୍କାର
ମନ୍ଦ୍ର ନାଦେ ଶଙ୍ଖ ଅବା ଘୋଷେ ଅନିବାର ।
"ଅନନ୍ତ ଅପାର ସିନ୍ଧୁ ମୋର ମହାଳୟ
ମୋ ଅନ୍ତର ଅନନ୍ତର ନାଦେ ନାଦମୟ ।

Digitized by srujanika@gmail.com

ସେ ଅମୃତ ଆନନ୍ଦରୁ ହୋଇ ଅନ୍ତଗତ
ଭୁଲିବ କି ମୋହେ ତାର ଅମୃତ ସଙ୍ଗୀତ ?
କ୍ଷୁଦ୍ରାଦପି କ୍ଷୁଦ୍ରତର ମର୍ତ୍ତ୍ୟ ଗୃହ ପାଇଁ
ଅବିଦ୍ୟା-ପ୍ରମାଦେ, ପାନ୍ଥ ହେଲ କି ହେ ବାଇ ?
କେମନ୍ତେ ହେ ପାସୋରିଲ ଜନ୍ମଭୂମି କଥା
ଭିଡ଼ି ତୁମ୍ଭ ରସନାରେ ଅମୃତ ବାରତା ?
ଅସ ଆସ ସୁଗମ୍ଭୀର ମହାଦେବ ତାନେ
ଜଗତେ ଜଗାଅ ସର୍ବ ଅନନ୍ତ ସନ୍ତାନେ ।
ଅନନ୍ତେ ଜୀବନ-ସ୍ଫୁର୍ତ୍ତି, ଅନନ୍ତେ ଅଭୟ,
ମର୍ତ୍ତ୍ୟ ପ୍ରବାସରେ ଗାଅ ଅମୃତର ଜୟ ।"



Digitized by srujanika@gmail.com

# ଅମୃତମୟ

ଗଙ୍ଗାଧର ମେହେର

[ କବି ଗଙ୍ଗାଧର ମେହେର ୧୮୬୨ ମସିହା ଶ୍ରାବଣ ପୂର୍ଣ୍ଣିମୀରେ ସମ୍ବଲପୁର ଜିଲ୍ଲାର ବରପାଲିରେ ଆବିର୍ଭୂତ ହୋଇଥିଲେ ଏବଂ ୧୯୨୪ ମସିହା ଚୈତ୍ର ଅମାବାସ୍ୟାରେ ତିରୋହିତ ହୋଇଥିଲେ । ପ୍ରତିକୂଳତାର ଭିତରେ ଉଚ୍ଚଶିକ୍ଷା ଲାଭରୁ ବଞ୍ଚିତ ଏହି ବରେଣ୍ୟ କବି ନିଜର ନୈସର୍ଗିକ ପ୍ରତିଭା ବଳରେ ନିରବଚ୍ଛିନ୍ନ ସାଧନାରେ ଓଡ଼ିଆ ସାହିତ୍ୟକୁ ସୁସମୃଦ୍ଧ କରି ଯାଇଛନ୍ତି । ତାଙ୍କ ରଚିତ କାବ୍ୟ କବିତା ମଧ୍ୟରେ 'ଇନ୍ଦୁମତୀ', 'ଉତ୍କଳ ଲକ୍ଷ୍ମୀ', ''କୀଚକବଧ', 'ପ୍ରଣୟବଲ୍ଲରୀ', 'ତପସ୍ୱିନୀ', 'ଅର୍ଘ୍ୟଥାଳି' ପ୍ରଭୃତି ପ୍ରଧାନ । 'ଅମୃତମୟ' କବିତାଟି ତାଙ୍କର 'ଅର୍ଘ୍ୟଥାଳି' କବିତା ସଙ୍କଳନରୁ ସଂଗୃହୀତ ହୋଇଛି । ]

ନବ ବିକଶିତ ଫୁଲ୍ଲ ଗନ୍ଧ,
ନବ ସରସ କବିତା ଛନ୍ଦ,
ବନବିହଗ ମଧୁର ତାନ,
ଶିଶୁ ସରଳ ତରଳ ଗାନ,
ନବ ପ୍ରଫୁଲ୍ଲ କମଳକାନନ,
ନବ ସୁକୁମାର ଶିଶୁ-ଆନନ;
ଅମୃତମୟ ଅମୃତ ରସ
ଭସାଇ ନେଉଛି ଜୀବନ ।
ଧୀର ଚଳିତ ଶୀତଳ ବାତ,
ଚାରୁ ଲଳିତ କୁମୁଦନାଥ,
କ୍ଷୀର-ଧବଳ ଚନ୍ଦ୍ରକାଜାଳ,
ନୀରଦାନନ୍ଦ ଘନମାଳ,
ମୃଦୁ ମଧୁର ଆଲୋକ ଉଷାର,
ନବପଲ୍ଲବପତିତ ତୁଷାର,
ଅମୃତମୟ ଅମୃତ ରସ
ମଜ୍ଜାଇ ଦେଉଛି ସଂସାର ।
ମିଟି ମିଟି ଜକ ଜକ ତାରା,
ଟପ ଟପ ଜଳଧରଧାରା,

Digitized by srujanika@gmail.com

ତମନାଶନେ ଧାବନ୍ତ ଧୃଷ୍ଟି
ତମମୁକ୍ତ ଅବନୀ ହୃଷ୍ଟି,
ଗିରିଗର୍ଭପ୍ରସୂତ ଝର୍ଝର,
ଦୂର ଲଙ୍ଘିତ ପ୍ରପାତ ଝର୍ଝର,
ଅମୃତମନ୍ତ୍ର ଅମୃତ ରସ
ଜୀବନ କରୁଛୁ ଜର୍ଜର ।
ମୁଁ ତ ଅମୃତସାଗର ବିନ୍ଦୁ,
ନଭେ ଉଠିଥିଲି ତେଜ ସିନ୍ଧୁ,
ଖସି ମିଶିଛୁ ଅମୃତଧାରେ,
ଗଢ଼ କରୁଛୁ ସେ ଅକୂପାରେ,
ପଥେ ଶୁଖିଗଲେ ପାପତାପରେ,
ହୋଇ ଶିଶିର ଖସିବି ତା'ପରେ,
ଅମୃତମନ୍ତ୍ର ଅମୃତ ରସ
ସହିତ ମିଶିବି ସାଗରେ ।



Digitized by srujanika@gmail.com

# ବସନ୍ତ

ନନ୍ଦକିଶୋର ବଳ

[ କବି ନନ୍ଦକିଶୋର ଆଧୁନିକ ଯୁଗର ଅନ୍ୟତମ ଖ୍ୟାତନାମା କବି । ଉଭୟ ଗଦ୍ୟ ଓ ପଦ୍ୟ ସାହିତ୍ୟକୁ ନିଜ ସାଧନାରେ ସେ ଶସ୍ୟଶ୍ୟାମଳା କରିଯାଇଛନ୍ତି । ତାଙ୍କ 'କନକଲତା' ଏକ ବହୁ ପ୍ରଶଂସିତ ଉପନ୍ୟାସ । କବିଙ୍କର ପ୍ରତିଭାର ସର୍ବଶ୍ରେଷ୍ଠ ଅଭିବ୍ୟକ୍ତି 'ପଲ୍ଲୀଚିତ୍ର'ରେ ଦେଖିବାକୁ ମିଳେ । ସେ ମୁଖ୍ୟତଃ ପଲ୍ଲୀକବି ରୂପେ ସୁପରିଚିତ । ତାଙ୍କ ରଚିତ ପୁସ୍ତକ ମଧ୍ୟରେ ଶର୍ମିଷ୍ଠା, କୃଷ୍ଣକୁମାରୀ, କନକଲତା, ପଲ୍ଲୀଚିତ୍ର, ନିର୍ଝରିଣୀ, ବସନ୍ତ-କୋକିଳ ପ୍ରଧାନ । 'ବସନ୍ତ' କବିତାରେ ପଲ୍ଲୀ ଚିତ୍ର ସହିତ ବସନ୍ତକାଳୀନ ପ୍ରକୃତିର ଚିତ୍ର ମଧ୍ୟ ପ୍ରତିଭାତ ହୋଇଛି । ]

ଶୀତ ଅନ୍ତେ ଆସେ ମଧୁର ବସନ୍ତ
ବହେ ଦକ୍ଷିଣା ପବନ,
ଆମ୍ବ ବଉଳର ଗନ୍ଧେ କୋଇଲି
କରଇ କଳ ଗାୟନ ।

ବଉଳ ଖାଇଣ କୋକିଳ ମଧୁରେ
ଗାଆନ୍ତି ଆନନ୍ଦଭୋଳେ,
ଦେଖୁଁ ଦେଖୁଁ ଆମ୍ବ- ଚଣା କଷି ହୋଇ
ଲେନ୍ଥି ଲେନ୍ଥି ହୋଇ ଦୋଳେ ।

ବନପ୍ରିୟ ଯୁବା ସହକାର ଶାଖେ
ଘନ ଉଚ୍ଚ ମଧୁତାନେ
ଗାଆନ୍ତେ ଆସିଣ, ବାଛିଣ ବରନ୍ତି
ତରୁଣୀ କୋକିଳାମାନେ ।

ଜୀବନ-ଯୁଦ୍ଧ ମେ ଯୋଗ୍ୟତମ ଜୟୀ
ଡରୱିନ୍ ଏହି ପର,
ଜଡ଼-ଉଦ୍ଭିଦରେ, ପ୍ରାଣୀ ଜଗତରେ
ଶତ୍ରୁସ୍ଥାନ ଯାଏ ସର ।

Digitized by srujanika@gmail.com

ବାଡ଼ମାନଙ୍କରେ ପାଳଧୂଆ ଫଳ
ରକ୍ତକାନ୍ତ ହରେ ମନ,
ଶିମୂଳି କୁସୁମ ହଣେ ଦାଉ ଦାଉ
ଜୋସ୍ରା ରକତ ବରଣ ।
ଅଶୋକ, କଆଁଳି, କଳଥର, ଫଳ୍ଗୁ
ଫୁଟି ହସେ ରଶି ରଶି,
ସେ ବାସ ବହନ୍ତି ହରେ ପ୍ରାଣିମନ
ମଳୟ ସଙ୍ଗତେ ମିଶି ।

ଫଗୁଣ ମାସରେ ଦୋଳପୂର୍ଣ୍ଣିମା ସେ
ଶ୍ରେଷ୍ଠ ପର୍ବ ଓଡ଼ଶାର,
ସୁକର କୋଠିଆ ଯାଆନ୍ତୁ ସୁକର-
ଗୁଣ୍ଡ ଘର ଯେ ଯାହାର ।
ଦୋଳଠାରୁ ସବ ବର୍ତ୍ତନ ନେଇଣ
ରହନ୍ତି ବର୍ଷକ ପାଇଁ,
କେହୁ ବା ଅଧିକ ଅର୍ଜନ ଆଶାରେ
କଲିକତା ଯାଏ ଧାଇଁ ।
ବଙ୍ଗଦେଶବାସୀ ଏହୁ ଗୋପାଳଙ୍କୁ
ଦେଖିଣ ଭାବନ୍ତି ମନେ,
'ଓଡ଼ଶା ଦେଶେ୍ର- ମାନଙ୍କର ଦେଶ
ଭଦ୍ରଲୋକ ନାହିଁ ଜଣେ ।'
ଗୋପାଳମାନଙ୍କ ପର୍ବ ଏହୁ ଦୋଳ
ଆରୋଖା ପିଠା କରନ୍ତି,
ଛଡ଼ ଧର ବେକ ହୋଇ ଠେଲାଠେଲି
ଓଗାଳ ଗାଇ ବୁଲନ୍ତି ।

ନାନା ଗ୍ରାମେ ହୁଏ ବମାନମେଳଣ,
ନାଟ ନାମ-ସଙ୍କୀର୍ତ୍ତନ,
ଫଗୁଖେଳେ ମାତ ପିଚକାରୀ ମାର
ସବେ ଲୋହିତ ବରଣ ।

Digitized by srujanika@gmail.com

ମଞ୍ଜଡୋଳେ ଆମ୍ବ- ଡାଳେ ଆମ୍ବ ଦୋଳେ
କ ସୁନ୍ଦର ପେଣ୍ଡି ପେଣ୍ଡି,
କ୍ନମାନ ଷିଲଣେ ଓହ୍ଲାନ୍ତୁ ଆଣି
ସେ ଆମ୍ବକୁ ଲେନ୍ତୁ ଲେନ୍ତୁ ।

ଅଢର ଗୁଣ୍ଡିରେ ହୋଇ ବମ୍ପୁଣ୍ଡିତ
ଦଣେ ତା’ ଲୋହିତ ବର୍ଣ୍ଣ,
ଚ଼ତଣାଖେ ଯେହ୍ନେ ଦଣଇ ସେ ଫଳ
ପଡ଼ୁ ବାଳାର୍କ-କରଣ ।

ଚଇତ ମାସରେ କୈବର୍ତ୍ତମାନଙ୍କ
ଚଇତି ଘୋଡ଼ା ନାଚଇ,
ଗ୍ରାମପ୍ରାନ୍ତେ ଘୋଡ଼ା- ମେଲଣ-ଯାତରା
ଗୀତ ଗହ୍ଵଳେ ଶୁଭଇ ।

ସେ ଗୀତେ ପ୍ରମାଣ କରନ୍ତି କୈବର୍ତ୍ତେ—
ସର୍ଜନାର ପୂର୍ବକାଳେ,
କଇବର୍ତ୍ତଗଣ ସୃଷ୍ଟି ହୋଇ ଆଗେ
ପ୍ରଳୟ ପୟୋଧିଜଳେ ।

ନାବ ଚଳାଇଲେ, ନରୂବା ଏ ସୃଷ୍ଟି
କପରେ ରହନ୍ତା ତେବେ,
କେଉଟମାନେ ଯେ ଜାତ ମାର ଡଙ୍ଗା
ନ ସମ୍ଭାଳିଥିଲେ ଦମ୍ଭେ ।

ହୋଇଣ ଚଢ଼େଇ ଚଢ଼େଇଣୀ ବେଶ
କରନ୍ତି ସୁଆଙ୍ଗ ଯେତେ,
ବ୍ରହ୍ମା ତ କୈବର୍ତ୍ତ- ତତ୍ତ୍ୱ ନ ପାଇଲେ
ମୁଁ ଗୁଣ ବର୍ଣ୍ଣିବ କେତେ ?

ଡଙ୍ଗା-ଜାତ-ଜନ୍ମ କେଉଁଠାରୁ ହେଲା
କେଉଟ ଜନ୍ମିଲା କେବେ,
କେଉଟୁଣୀ ଚୂଡ଼ା ଯେ ହାଣ୍ଡିରେ ଭଜେ
ବାଇଜ ହାଣ୍ଡି ସେ ଯେହ୍ନେ ।

Digitized by srujanika@gmail.com

କପର ଶ୍ରୀକୃଷ୍ଣ    କାଳିନ୍ଦୀ ଘାଟରେ
    ଗୋପାଙ୍ଗନା ଜଳେ ଧାଇ,
କପର କାଳିଆ    ବୃଷଭାନୁ ସୁତା
    ଭକତରେ ଥିଲେ ଧ୍ୟାଇ ।
ଏରୂପର ଯିନା    ବ୍ରହ୍ମାଣ୍ଡଠାକୁର
    ଭବସିନ୍ଧୁ-କର୍ଣ୍ଣଧାର,
ଭକତମାନଙ୍କୁ    ପୁଣ୍ୟନାବେ ଘେନ
    କରନ୍ତୁ ଭବାବ୍ଧି ପାର ।
ରାଧା ଆରାଧନା-    କାରଏ ଜୀବାତ୍ମା
    ଏ ଭବ ଯମୁନାବାରି,
ଚନ୍ଦ୍ରସେଣା ଯିନା    ଏ ମାୟା ସଂସାର,
    ରାଧା-ଆନନ୍ଦେ ସଂସାରୀ ।
ଭକତ ସଂସାର    ଜାତି, କୁଳ, ମାନ
    ତେଜି ଭଜେ ଭଗବାନେ,
ଆତ୍ମା-ପରମାତ୍ମା-    ଲୀଳା ବର୍ଣ୍ଣିଛନ୍ତି
    ଏ ଭାବେ ଭାବୁକମାନେ ।



Digitized by srujanika@gmail.com

# ଜୟ ଜଗଦୀଶ ହରେ

ଗୋପବନ୍ଧୁ ଦାସ

[ ଉତ୍କଳରେ ଏପରି କୌଣସି ଜନପଦ ନାହିଁ, ଯେଉଁଠାରେ ପଣ୍ଡିତ ଗୋପବନ୍ଧୁଙ୍କ ନାମ ସହିତ ଜନସମାଜ ପରିଚିତ ନୁହନ୍ତି । ଓଡ଼ିଶାର ଜାତୀୟ ଜୀବନ ଏବଂ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ଅବିସ୍ମରଣୀୟ । ମହାସ୍ମରଣୀୟ ଜାତୀୟ ଜୀବନକୁ ଗୋପବନ୍ଧୁ ଦେଇଛନ୍ତି ଓଡ଼ିଶାର ସର୍ବଶ୍ରେଷ୍ଠ ଅର୍ଘ୍ୟ । ଦେଶସେବା କାର୍ଯ୍ୟରେ ଜୀବନର ଅଧିକାଂଶ ମୁହୂର୍ତ୍ତ ଅତିବାହିତ କରିଥିଲେ ହେଁ, କର୍ମବହୁଳ ଜୀବନରେ କିଞ୍ଚିତ ଅବକାଶ ପାଇବା ମାତ୍ରେ ସେ ନିଜକୁ ସାହିତ୍ୟ ସେବାରେ ଉତ୍ସର୍ଗ କରୁଥିଲେ । ତାଙ୍କ 'ଧର୍ମପଦ', କାରାକବିତା, ଗୋ-ମାହାତ୍ମ୍ୟ ପ୍ରଭୃତି ଓଡ଼ିଆ ସାହିତ୍ୟରେ ବହୁଳ ଆଦୃତି ଲାଭ କରିଛି । 'ଜୟ ଜଗଦୀଶ ହରେ' ତାଙ୍କର ପ୍ରଖ୍ୟାତ 'ଧର୍ମପଦ' କାବ୍ୟରୁ ସଂଗୃହୀତ ହୋଇଛି । ]

ହୋଇ ଏକ ଧ୍ୟାନ          ମିଳାଇଣ ତାନ
ବୀଣା-ସଙ୍ଗୀତ ଲହରେ,
ଗାଏ ଧର୍ମପଦ          ପରମ ଆନନ୍ଦେ
"ଜୟ ଜଗଦୀଶ ହରେ ।"

"ନମୋ ନିରଞ୍ଜନ          ନିଖିଳ ନିଦାନ
ବ୍ୟାପ୍ତ ସର୍ବଚରାଚରେ,
ପ୍ରଭୁ ଦୟାମୟ          ମଙ୍ଗଳ ଆଳୟ
ଜୟ ଜଗଦୀଶ ହରେ ।

"ନମୋ ନିରାକାର          ସର୍ବ ବିଶ୍ୱାଧାର,
ବ୍ୟକ୍ତ ବାହ୍ୟ ଅଭ୍ୟନ୍ତରେ,
ପ୍ରଭୁ ବିଶ୍ୱପତି          ଅଗତିର ଗତି
ଜୟ ଜଗଦୀଶ ହରେ ।

"ଧରି ଭୂମି ବଳ          ବହଇ ଅନିଳ
ଅନ୍ତରୀକ୍ଷେ ନିରନ୍ତରେ,
ଆଦେଶେ ଉଦଧି          ନ ଲଙ୍ଘେ ଅବଧି
ଜୟ ଜଗଦୀଶ ହରେ ।

Digitized by srujanika@gmail.com

"ତବ ଦିବ୍ୟ ଜ୍ୟୋତି ପରକାଶେ ନିତି
ଗ୍ରହତାରା ମାଳା ମଧ୍ୟରେ,
ତବ ପୁଣ୍ୟ ହାସେ କୁସୁମ ବିକଶେ
ଜୟ ଜଗଦୀଶ ହରେ ।

"ନଦୀ ବନ ଗିରି ଗ୍ରାମ କାନ୍ତ ଶିରୀ
ବ୍ୟକ୍ତ କରାନ୍ତି ଧରେ,
ଗାଏ ଭୃଙ୍ଗ ଗୀତି ଏ ବିଶ୍ୱ ଆରତି
ଜୟ ଜଗଦୀଶ ହରେ ।

"ଅନନ୍ତ ମହିମା ଅତୁଳ ସୁଷମା
ବରଣେ ବର୍ଣ୍ଣେ ସ୍ତବେ ସ୍ତବେ,
ତବ ମହାପ୍ରେମ ଖେଳେ ଚରାଚରେ
ଜୟ ଜଗଦୀଶ ହରେ ।

"ସେ ମହାମହିମା କି ବୁଝିବ ପ୍ରଜ୍ଞେ
କ୍ଷୁଦ୍ର ନର-କଳେବରେ,
କି ଭାଷାରେ ତବ କରିବ ହେ ସ୍ତବ
ଜୟ ଜଗଦୀଶ ହରେ ।

"ଦେଶକାଳ ସୀମା ଅତୀତ ମହିମା
ଅଗୋଚର ଭୁବନରେ,
ଏକ ଅଦ୍ୱିତୀୟ ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।

"ପ୍ରଭୁ ପରାତ୍ପର ପରମ ଈଶ୍ୱର
ଅଗ୍ରୀ ଦିଅ ଶ୍ରୀପଦ୍ମରେ,
ପୁରୁ ତବ ଇଚ୍ଛା ଏ ନର-ପରାଣେ
ଜୟ ଜଗଦୀଶ ହରେ ।"

"ପ୍ରକାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ ଅନ୍ତରେ
କର ଆଶା ସିଦ୍ଧି କରୁଣା-ବାରିଧି
ଜୟ ଜଗଦୀଶ ହରେ ।

Digitized by srujanika@gmail.com

"ମୋ ହୃଦସ୍ଥ ସ୍ୱାମୀ ପ୍ରଭୁ ଅନ୍ତର୍ଯାମୀ
ଦେଖ ଭକ୍ତ ଯାହା ଥରେ,
ଯେ ଅମୃତ-ରସ ତଥ ପ୍ରାଣପଣ
ଜନ୍ମ ଜରପାଣ ହରେ ।

"ଚନ୍ଦ୍ରଶ୍ୱରା ମୋର ଘେନ ନମସ୍କାର
ନଅ ମୋତେ ନିଜ ଅଙ୍କେ,
ବନ୍ଧୁ ମାତୃସ୍ନେହ ପିଣାଅ ଏ ଦେହ
ଅଚଳ ହୃଦୟ ସଙ୍ଗେ ।"



# ରାମଚଂଡ଼ୀରେ ରାତି

ନୀଳକଂଠ ଦାସ

[ 'କୋଣାର୍କ' କାବ୍ୟଗ୍ରନ୍ଥର କବି ରୂପେ କବି ନୀଳକଣ୍ଠ ଓଡ଼ିଆ କାବ୍ୟ ସାହିତ୍ୟରେ ପ୍ରଖ୍ୟାତ । ଉତ୍କଳୀୟ ସଂସ୍କୃତିର ବ୍ୟାଖ୍ୟାକାର ରୂପେ ସେ ସୁପରିଚିତ । ସେ ୧୮୮୪ ମସିହାରେ ଆବିର୍ଭୂତ ହୋଇଥିଲେ ଏବଂ ୧୯୬୭ ମସିହାରେ ତାଙ୍କର ତିରୋଭାବ ହୋଇଥିଲା । ସତ୍ୟବାଦୀ ଯୁଗର ଏହି ବିଶିଷ୍ଟ ପ୍ରତିଭା ଓଡ଼ିଶାର ଜାତୀୟ ଜୀବନରେ ଏକଦା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । କେବଳ ସତ୍ୟବାଦୀ ସ୍କୁଲର ଶିକ୍ଷକ ରୂପେ ନୁହେଁ, ସମ୍ବଲପୁର ଜାତୀୟ ସ୍କୁଲର କର୍ଣ୍ଣଧାର ରୂପେ ସେ ଇତିହାସର ପୃଷ୍ଠାରେ ସ୍ମରଣୀୟ ହୋଇ ରହିଛନ୍ତି । ସାମାଜିକ କୁ-ସଂସ୍କାର ବିରୁଦ୍ଧରେ ତାଙ୍କର ଦୃପ୍ତ ଅଭିଯାନ ଉଲ୍ଲେଖ-ଯୋଗ୍ୟ । ତାଙ୍କ 'ମୋ ଜୀବନ', 'ଅଛୁ ଓ ହେବୁ', 'ମୃତସ୍ୱପୂଜା ଓ ପ୍ରତିମାପୂଜା'ରେ ତାଙ୍କର ବୈପ୍ଳବିକ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ । ତାଙ୍କ 'କୋଣାର୍କ', 'ଖାରବେଳ', 'ପ୍ରଣୟିନୀ' ଓଡ଼ିଆ କାବ୍ୟସାହିତ୍ୟର ଗୌରବ । 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' ଏବଂ 'ଓଡ଼ିଆ ଭାଷା ଓ ସାହିତ୍ୟ' ତାଙ୍କ ପ୍ରଜ୍ଞାର ପ୍ରତୀକ । 'ରାମଚଣ୍ଡୀରେ ସନ୍ଧ୍ୟା' ତାଙ୍କର 'କୋଣାର୍କ' କାବ୍ୟ ଗ୍ରନ୍ଥରୁ ସଂଗୃହୀତ ]

ଶୁଣ ରେ ବାଳକେ ଆଗମେ, ଏଥି ନାହିଁ ତ ଡର,
ଶୋଭୁଛି ତ ସୁଖେ ଆଦରି ରାମଚଂଡ଼ୀ-ମନ୍ଦିର ।
ଉତ୍କଳର ପୁଣ୍ୟଭୂମି ଏ, ଏବେ ସିକତା ଖେଳେ
ଗୁଡ଼କଂକେ ମୁଗ କୁଳଂଠ ଅପଂତର ପ୍ରାନ୍ତରେ ।
ଦିବାକର-ପୁର ସୁଂଦର ଟେକି ଉନ୍ନତ ଚୂଡ଼ା,
ସାଗର-ସଘାତ ପବନେ କରୁନହିଁ ତ କ୍ରୀଡ଼ା ।
ବାରିଧି-ଉରସେ ତରଣି ଦିସି ଅରୁଣ ରଥେ,
ସିଂହାସନେ ପଶୁନାହାନ୍ତି ସିଂହ ଦୁଆର-ପଥେ ।
ଚଂଦ୍ରଭାଗା ଖୀର କଂପନେ ରକ୍ତ-ପୁଣ୍ୟ ନଦୀ
ନାଚୁନାହିଁ ଭବ-ଦୂଳକେ, ଲଭି ଦୁରନ୍ତ ଅବ୍ଧି ।
ଏହି ରାମଚଂଡ଼ୀ ସଦନ-ଦଂଡ଼ ଆସିଷ ଏଥି,
ଆଜି ସେହିଦିନୁ ଫେରିଲ ନାହାଂତି ତ ହେ ଗତ !
କୁଶଭଦ୍ରା ଘୁଂଚି ଆସିଛୁ, ସିଂଧୁ ଯାଇଛୁ ଫେରି,
'ଗୁରୁଜ' ନଗରୀ ଭାଂଗିଛୁ କାଳ ଗ୍ରାମ-ଲହରୀ !
ଭଂଗ ଦେବାଳୟ କୋଣାର୍କ ଭଗ୍ନ ସ୍ତୂପ ଭିତରେ ।
ରତ୍ନ-ସିଂହାସନେ ତପନ ବିଜେ ପ୍ରଖର କରେ !

Digitized by srujanika@gmail.com

ସୂଚୀ-ଶିଳ୍ପ-କଳା ମଣ୍ଡନେ ଭାଗ୍ୟ ଆଦର ରହେ,
ଇତିହାସ ସାକ୍ଷ୍ୟ ପ୍ରଦାନ୍ତ ଶିଳା ତାହାର ଶୋହେ।
ଜୀର୍ଣ୍ଣ ମୁଖଶାଳା ଉଠିଛି କୀର୍ତ୍ତି-କଙ୍କାଳ ପରି,
ପ୍ରତ୍ନ ପୁରୁଷଙ୍କ ପ୍ରେତ ସେ, ଏବେ ଦଶେ ତାହାର।
କାଳର ଯାତନା ବହଇ ଅଙ୍ଗେ ବକାଶି ତାନ;
ବୁଝିଲ କି ଶିଶୁ କଳ ନ ତଣ୍ଡି ଏତେ ବନ୍ଧାର ?
ଶୋଇଛ ତ ଏବେ ଶୁଣିବ, କେତେ ସ୍ୱପନ-ବାଣୀ,
କାଳ ସ୍ରୋତ ସବୁ ଦେଖିବ, ପ୍ରତି ଲୋମେ ହଜାରି।
ଦେଖିବ ହେ କେତେ ବଇଭବ ପ୍ରାଣ ପୁଲକ-ଭରେ
ସମର ଦୁନ୍ଦୁଭି ଶୁଣିବ ରୁଦ୍ର ଚଉଦୁଆରେ।
ଯାଜପୁର କୁଣ୍ଡେ ପଣ୍ଡିତ ଅଶ୍ୱମେଧ ଆହୁତ
ତୋଷାଲି-କଟକେ ରମଣୀ-ଭୃଙ୍ଗ-ରାଜନ୍ୟ-ନୀତ,
ଶିଳ୍ପୀ ପଣ୍ୟଜୀବୀ ପଣ୍ଡିତ, ପୁଣି ଦେଖିବ ଯାରେ;
ଭୀମ ରଣଭେରୀ ଶୁଣିବ ବାରବାଟୀ ଦୁଆରେ।
ଶତ ଗିରିଦୁର୍ଗ ଜଙ୍ଗଲେ ନ ଟଳିବ ନୟନେ;
କୃଷକ ବାହିନୀ ଉଠିବେ ଗ୍ରାମ ନଗର ବନେ,
ଗିରି-ବନ୍ୟ ଭେରୀ ନିନାଦେ ଉଠ ପ୍ରଭଞ୍ଜନାଦ
ଝୁରୁ ଗିରିନଦୀ ପ୍ରପାତେ ମିଶିଯିବ ଶବଦ;
ମେଘାସନ ଧୂମ୍ର ଶିଖରୁ ଯିବ ମହେନ୍ଦ୍ର, ଯାଏ
ସମୀର ଲହରେ ଶବଦ ଖେଳ ଊର୍ମ୍ମି ପରଶଏ;
ଭାଗୀରଥୀ ପୁଣି କାବେରୀ ନୋଇ କେତେ ଅଧୀର,
ଦେବେ ଥରେ ଅରେ କମ୍ପାଇ ତାଙ୍କ ଦୂର ସଳିଳ;
ଭୃଙ୍ଗ ହିମଗିରି ହସିବ ଶୁଭ୍ର-ତୁହିନ-ହାସେ
ଅବାଚୀ ଦଗନ୍ତେ କୁମାରୀ ଊର୍ମ୍ମି-ଭଙ୍ଗ ବିଳାସେ,
ଚିଲିକା ଗରଭେ ଉଠିବ ଶତ ବୋଇତ ଭାସି,
ଅବୁଣିତ ଦେଖି ବାରୁଣୀ-ପଟେ ଜଟିଆ ନାସି;
ଗଉରବ-ଗାଥା ଶୁଣିବ, ବଂଶୀ ଗାଇବେ କେତେ;
ଭୀମ ତରବାରୀ-ଫଳକ ଯୋଧେ ଟେକିବେ ହାତେ।
କବରୀ ଫିଟାଇ ତରୁଣୀ ମଧୁଶଯ୍ୟା ବାସରେ
'ରଣ ଜିଣି ଆସି ବାନ୍ଧିବ' ବୋଲି ଗୁଞ୍ଜିବେ ଯାରେ।

●

Digitized by srujanika@gmail.com

# ଗାଲମାଧବ

**ଗୋଦାବରୀଶ ମିଶ୍ର**

[ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଜନ୍ମ ୧୮୮୬ ମସିହାରେ ଏବଂ ଦେହାନ୍ତ ଘଟିଥିଲା ୧୯୫୬ ମସିହାରେ । ଓଡ଼ିଆ ସାହିତ୍ୟର ଏକ ସବ୍ୟସାଚୀ ସତ୍ୟବାଦୀ ଯୁଗର ଏକ ପ୍ରଖ୍ୟାତ କବି, ଔପନ୍ୟାସିକ, ଗାଳ୍ପିକ ଓ ନାଟ୍ୟକାର । ତାଙ୍କ ଗୀତିକବିତା ଓ ଗାଥା କବିତା ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବି କରେ । ଦେଶସେବା ଏବଂ ସାହିତ୍ୟ ସେବା ତାଙ୍କ ଜୀବନର ପୁଣ୍ୟବ୍ରତ ଥିଲା । ଆଲେଖିକା, କଳିକା, ମୁକୁନ୍ଦଦେବ, ପୁରୁଷୋତ୍ତମ ଦେବ, 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ ପ୍ରଭୃତିର ଜୟଗାନ କରୁଛି । 'ଗାଲମାଧବ' ଗାଥାକବିତା ରଚନାରେ କବିଙ୍କର ଅନନ୍ୟ ସାଧାରଣ ପ୍ରତିଭାର ସଙ୍କେତ । ]

( ୧ )

"ଟପ୍-ଟପ୍ ଘୋଡ଼ା ଖୁରର ଶବଦେ
ମାଡ଼ି ଆସୁଅଛି ଶତ୍ରୁ,
କୋଶ ପାଞ୍ଚ ହେବ ପଡ଼ିଛି ଆଗେ ତ
ବାଲିଧଡ଼ା ଅପନ୍ତରା ।"
ପାଞ୍ଚ କୋଶ ବାଲି ପାରିହେବ ବୋଲି
ଧାଇଁ ଘୋଡ଼ା ଚଲେ ଟାଣେ,
ଗୁଡ଼ି କଳିଆର, ଗାଲମାଧବ ଲେ,
ବସିଛି ଉଲ୍ଲାସ ମନେ ।
ତଇଁ ସକାଳ ସବୁ ଖରା ପଡ଼ୁ
ମାରୁଛି ଅଳଷ୍ୟେ ଝଳ,
ଖୋଲହାତ ଲମ୍ବେ ଗୁଲି ପଡ଼ୁଛି ଲେ
ବେଗ ବଳୁ ନୋହେ ଦେଖି ।

( ୨ )

ଖୁରୁ ଖୁରୁ ଘୋଡ଼ା ଝୁଣ୍ଟି ଆକସ୍ମିକେ
ଅଣ୍ଟୁ ମାଡ଼ି ଗଲା ପଡ଼ି,
ଅଟ୍ଟେ ରହିଲା ଯେ ଗାଲମାଧବ ଲେ,
ତଇଲେ ପଛକୁ ଚଳି ।

Digitized by srujanika@gmail.com

ସାମାନ୍ୟ ଶ୍ରେଣୀ ସେ ନୃପେଁ ମଧ୍ୟେ, ନାଆଁ
ବାଜେ ଛନ୍ଦ ଭବ ଲୋକେ,
ଘୋଡ଼ା ପିଠି ବସେ ଆଜନ୍ମକାଳୁ ସେ,
ପାଦେ ଭୂଲ ନାହିଁ ଠିକେ ।
ସେହିଲେ, ହଟେ ପୁଣି ତେଭଁ ବାଳ ମଧ୍ୟେ
ଖୋଜେ କ ହଁଶିଲ ଘୋଡ଼ା,
ଖୋଲି, ଚନ ଏକ ଦେଖିଲ ନଟେ ଲେ,
ନ ଯାଇ ଦୋଇଲ ଛୁଡ଼ା ।
କହିଲ, "ବେଗେ ମୁଁ ଯାଇଥିଲେ ସିନା
ଦେଖନ୍ତ ସ୍ୱଳପା ମୂର୍ତ୍ତି,
ମାଟେ ହେଲ ଚୋଷ୍ଟ ନ ଭେଟି ଗିରସ୍ତେ
ନାଦ କରୁଥିବ କୋହ ।
ଲଗାଇ ସିନ୍ଧୁରଚୋପି ମୋ ଭଣାଲେ
ହେଉ ଯେ ଥିଲ ମେଲଣି,
ସେ କାଟେଲ ମୁଣ୍ଡେ ମୁଁ ପାହ୍ନାଣିଲ ପଦ୍ମ,
ମୁଣ୍ଡ ଛଡ଼ାଇଲ ପାଣି ।
ଦୁଇ ନେଷୁ ଭାର ଦୁଇ ଲୁହଧାର
ଗଡ଼ାଇ ପୋଛିଲ ହୃଦ,
କହିଲ, 'ମା କାଳୀ ମଙ୍ଗଳେ ଆଣିମୁଁ',
ହସି ପାଖେ ହେଲ ଛୁଡ଼ା ।
ସେ ତାର ମୂରତି ଏ ଡାଣଣ ଦନେ
ଷଣେ ନ ପାରିଲ ଭୁଲି,
କେତେ ତ ସହିଲ ତଇସ୍ତ ଚଞ୍ଚଣା,
ଦେହେ ଖଣ୍ଡାଘାତ ଶୂଳ ।
ଫେରାଇ ମା କାଳୀ ଆଣିଛନ୍ତି ମୋତେ
ଶୁଭେ ତା ଗୁହାର ଶୁଣି,
କ ତୃଷ୍ଟ ନୃହନ୍ତା ଏକେ ଦନ ଅନ୍ତେ
ଦେଖିଲେ ନସ୍ତନେ ପୁଣି !
ତେବେ, ଚନ ଏବେ ଖୋଲ ନ କାଢ଼ିଲେ
କୁଳକୁ କଳଙ୍କ ସିନା,
ସବୁ ଖଣ୍ଡାଯୁତ ସହପାଠେ ମଧ୍ୟେ
ଜାତ ଅପଖ୍ୟାତ ହିନା ।"

Digitized by srujanika@gmail.com

( ୩ )

ବାରଣସୀ ଲୋକ କୋଡ଼ ଦୋଳା ହାତେ
ଅଣ୍ଟା ଭିଡ଼ିଛନ୍ତି କାମେ,
କଏ ଖୋଲେ, କଏ ବୁହଇ ବାଲି ଲୋ,
ବସି ନ ରହୁଛି ଜଣେ ।
ହେଲା ଚଉପାଶେ ବାଲି କୁଢ଼ମାନ
ପର୍ବତ ପରାଏ ଠିଆ;
ଦାଜି ମେଘ ଅବା ସଜଳ ଶୂନ୍ୟେ ଲୋ,
ପ୍ରସନ୍ନ ହେଉଛି ହୁଆ ।
ଦୁଇ ହଜାରରୁ ଊଣା କି ବରଷ
ସେ ଦିନୁ ଯାଇଛି ବିତି;
ବାଲିକୁଢ଼ ଯେତେ ଉଡ଼ି ପବନେ ଲୋ,
ଗଲାଣି ଭୂଇଁରେ ଲୋଟି ।
ଏବା ତୋଟାଗୋପୀନାଥ କୁଦ ଆଜି
ଉଚ୍ଚେ ଟେକିଅଛି ମଥା;
ଚଢ଼ି ଥରେ ପୁଣି ଓହ୍ଲାଇଗଲେ ଲୋ
ଦେହୁ ନ ଗ୍ରୁଡ଼ବ ବ୍ୟଥା ।
ତା ସମାନେ ଯେବେ କୁଦ ଦଣଗୋଟା
ଠିଆ ହୋଇଥାନ୍ତା ତଳେ;
କେତେ ବାଲି ଥିଲେ ଖୋଳି ସେ ଲୋକେ ଲୋ,
ପସନ୍ଦେ ଜାଣନ୍ତେ ଭଲେ ।

( ୪ )

ଦୁଇମାସ ଠିକେ ଖଟି ଦିନରାତ
ଦେଖିଲ କଲେ ସେ ଛଡ଼ା,
ବେଢ଼ା, ମୁଖଶାଳା, ନାଟମନ୍ଦର ଲୋ,
ଗୋଟିଏ ସ୍ଥଳେ ଗଢ଼ା ।
ହସି ତହୁଁ ଗାଲମାଧବ କହିଲ—
"ନିଜ ହାତ ଶ୍ରମବଳେ,
ଗ୍ରାମର ଏ ମଣିଷ ସାଧି ବଡ଼ କାର୍ଯ୍ୟ
ଧନ୍ୟ ହୁଏ ମହୀତଳେ ।

Digitized by srujanika@gmail.com

ଢଳେ ଗୋଟା ଗନ୍ଧମାଦନ ପର୍ବତ
ନେଇ ମୁଣ୍ଡେ ହନୁମାନ,
ବାରଣସୀ କୋଣ ଦୂରେ ରଖିଥିଲା
ଲକ୍ଷ୍ମଣଙ୍କ ଲାଗି ଜାଣ ।
ସାମାନ୍ୟ ନେଉଳୀ ମୂଷା ମନ୍ଥି ସିନ୍ଧୁ
ଦେଲେ ସେତୁବନ୍ଧ ବାନ୍ଧି,
ଶୋଇଥିଲେ ଭୀଷ୍ମ ଦେବ୍ରମାସ ସବ
ଶେଯ ଶରମୂନେ ଛନ୍ଦ ।
ମନେ ଯେହୁ ସାହ. କରବ ପ୍ରତିଜ୍ଞା,
ଅସାଧ୍ୟ ନୋହିବ ଭଲେ,
ଏ ସବୁ ଦେଉଳ ପୋତ ମାଟିତଳେ,
କି ଲାଭ ଜାଣି ମସ୍ତକେ ।"

( ୫ )

ସେ ଦେଉଳ ମଧ୍ୟେ ରତ୍ନସିଂହାସନେ
ବିଜେ ଯେ ଜଗତପତି,
ପାଶେ ବଳରାମ ସୁଭଦ୍ରା ଦେବୀ ଲୋ,
ପ୍ରସନ୍ନ ହଉଲେ ଅନ୍ତ ।
ଲୋଡ଼ ପଣ୍ଡା, ଧୂପ, ବଢ଼ାଇ ସେ ପଦେ
ଜୁହାର, ପିଟିଲା ଘୋଡ଼ା;
ସଞ୍ଜୁ ରାତ ଅଧେ ନୋହୁଛୁ ସବୁ ଲୋ,
ଘରେ ଯାଇ ହେଲା ଛଡ଼ା ।
ବିରହେ କି କରୁଥିଲା ବସି ଗୋସ୍ୱା
କହି କି ପାରିବ ତୁଣ୍ଡେ ?
ଶୁଣି ଦୂରୁ ଘୋଡ଼ା ଟାପୁଶବଦ ଲୋ,
ବୁଲୁ ହୋଇଗଲା କୁଣ୍ଡେ ।

( ୬ )

ଦେଖିଲେ ଦେଉଳ ଓଡ଼ିଆ ନୃମଣି
ପୁଚ୍ଛା କଲେ ଆଚମ୍ବିତେ —
"ଗଡ଼ଲୋକେ କିଏ କି ଜାଣିଛ, ଆଜ
ଫେଡ଼ି ତଥ୍ୟ କହ ମୋତେ ।"

Digitized by srujanika@gmail.com

ଶୁଣି ଜଣୁ ଜଣେ ଯୋଡଦେଲେ ମଥା
 କହିଲେ, "ନ ଜାଣୁ କିଛୁ,
ଆମ ଜନ୍ମକାଳ ଆଗୁଁ ଏ ଦେଉଳ
ଦ୍ୱାଇଲିଛଳେ ଥିଲା ଲୁଚି ।
ଉଧୃତା ବିଚାର ମାୟା କେ ବୁଝିବ
ମନୁଷ୍ୟ ଜନମ ପାଇ,
କେତେ ରତ୍ନ କେତେ ଦୁର୍ଲ୍ଲଭ ସମ୍ପଭି
ଲୁଗ୍ଇ ରଖିଛି କାହିଁ ?"

( ୭ )

ହେଲେ ସବା ପଛେ ସିଂହାସନ ଆଗେ
ଉଷା ବୁଢ଼ା ହେଲା ଆସି,
ଚମ ଲୋଳ ଲୋଳ ଦିଶଇ ଦେହେ ଲୋ,
ମୁଣ୍ଡ ବାଳ ଧଳା ଧାଡି ।
ଦାନ୍ତ ପଡ଼ ପାଟି ହୋଇଛି ପାକୁଆ
ସଳଖେ ନ ପାରେ ଚାଲି,
ତଗ୍ ଦୁଇ ପର ଜଳୁଛି ତାର ଲୋ,
ଆଖି ଦୁଇଗୋଟି ଖାଲି ।
କେ ଜାଣେ କାହିଁକ ଆସୁଅଛି ବୁଢ଼ା,
ଦେଖି କେ ପଳାଏ ହସି,
ଗର୍ବ ବଖାଣିଲା, ରଜା ପରଜା ଲୋ,
ଶୁଣନ୍ତି ଚକଚେ ବସି ।
କହିଲା ବୟସ ହେଲା ସାତକୋଡ଼ି,
ନେଦେ କି ଦେଖିଲି କାହିଁ ?
ତୁମ୍ଭଙ୍କ ଗୋସେଇଁବାପ ଏହି ହାତେ
ବାଲୁତେ ପାଳିଛି ମୁହିଁ ।
ଦେଖିଥିଲି ଏହି ଦେଉଳ ସେକାଳେ,
ନାହିଁଛି ଆଜ ନୟନେ,
ତୋଳିଥିଲେ ଇନ୍ଦ୍ରଦ୍ୟୁମ୍ନ ମହାରଜା
ବୋଲି ଶୁଣିଥିଲି କାନେ ।

Digitized by srujanika@gmail.com

ତାଙ୍କ ନାଁ ଅନୁରୂପେ ଇନ୍ଦ୍ରଦ୍ୟୁମ୍ନ
ସାଗର ଅଛନ୍ତି ରହି,
ଦେଉଳ ବଢ଼େଇ ଶ୍ରମ ପାଣି ମଧ୍ୟେ
ଲୁଚନ୍ତି କୁସୁମ ହୋଇ ।
ଲଢ଼କଥା ମୁଆଁ ଯାଠ ଡାକଲେ ସେ,
ପଦ୍ମର ଢଥନ୍ତି ଦେଖା,
କେତେ ଶ୍ରମ ଧନ୍ଦ ଦେଉଳ ଏ ମର୍ତ୍ତ୍ୟ
ତୋଳି ଥୋଇକଲେ ଏକା ।
ଦିନେ ଜ୍ୟେଷ୍ଠ ଖରତାପେ ଅପରାହ୍ଣ
ପବନ ଅସିଲ ମାଡ଼ି,
ସମୁଦ୍ର ଉଛୁଳି ପାଣି ପୋହୁଗଲା
ଦେଉଳ ରହିଲା ବୁଡ଼ି ।
ଘର ଗାଁ କେତେ ଭାଙ୍ଗି ଭାସିଗଲା,
ଝୁଣ୍ଟେ କି ଜଗିବ ମୁହିଁ ?
ଲକ୍ଷ ଶହ ଲୋକ ବୁଡ଼ିଗଲେ, ଠିକେ
ସମୁଦ୍ର ହୋଇଲା ଭୂଇଁ ।
ଗୋରୁମେଣ୍ଢା ଛେଳି ମଇଁଷିଙ୍କ ମଢ଼ା
କେତେ ଯେ ବୁଲିଲା ଭାସି,
ଖୁମ୍ପି ଲାଗିଥାନ୍ତି ଠାବରୁ ଠାବକୁ
କୁଆ ଚଲପଲ ଆସି ।
ଏଭଳି ସମୁଦ୍ର ମାଡ଼ିଆସେ ବୋଲି
ଲୋକେ ତ ନ ଥିଲ ଶୁଣା;
ସାକ୍ଷାତ ପ୍ରଳୟ ସିନା ସେ, ଶମ୍ଭୁ ହେ,
ନୋହିବ କଣିକେ ଊଣା ।
ଛଅଦିନ ଛଅ ରାତି ସେ ପ୍ରଳୟ
ରହିଲା ରାଇଜ ଘୋଟି,
ସମୁଦ୍ର ଗରଭ ପାଲଟିଲା ଠିକେ
ମାଟିର ଭୂତଳ ଗୋଟ ।
ସାତ ଦିନେ ପୁଣି ଗୁଡ଼ିଯାଇ ପାଣି,
ଦାଆ ହୋଇଗଲା ଥିର,
ହେଲେ, ବାଲିଗଦା ଜମା ହେଲା ଉଞ୍ଚେ
ଦିଶିଲା ନାହିଁ ଦେଉଳ !

Digitized by srujanika@gmail.com

ଗ୍ରମ୍ଭଙ୍କର ଅଣ ଗୋସ୍ୱାଇଁ ଗ୍ରଇଁକେ
କରୁ ତ ଥିଲେ ଗଜ୍ଜୁତ
ଖୋଲ କାଢ଼ ବେଗେ ଦେଖିଲ ମହିମା
ଆଜ୍ଞା ଜଣାଇଲେ ରହି ।
ଶୁଣି ପାତ୍ର ମନ୍ତ୍ରୀ ପରଜା ପାଇକେ
ତଣ୍ଡକେ ଲଗିଲେ ଭାମେ,
କେ ଖୋଲ ବସିଲ କେ ବେ ହଲ ବାଲି,
କେ ପଟ୍ଟସ୍ତ୍ର ହେଲ ଭାମେ
ହେଲେ, ଗତେ ସ୍ୱପ୍ନ ଦେଖିଲେ ନୃମଣି
ଆସନ୍ତ ବ୍ରାହ୍ମଣ ପାଶେ,
ହସ୍ତେ ପାଞ୍ଚହାତ କ ଡଉଲ କାସ୍ଥା
ପିନ୍ଧି ପୀତାମ୍ବର ବେଶେ !
କହିଲେ ସେ ନୃପ ନ ଖୋଲ ଦେଉଳ
ପଣିରୁ ପାତାଳେ ମୁହିଁ,
ତ୍ରିଶ୍ରଧନ ଲୋଭେ ମଣ୍ଡିଲେ ଲୋକେ
ଦେବତା ଚହ୍ନିଲେ ନାହିଁ ।
ତ୍ରିଶ୍ର ମୁହିଁ ଏଡ଼ ଜନେ ଯେବେ ପୁଣି
ଘଣେ ବଳାଇବେ ମନ,
ସେତେବେଳେ ମୋତେ ଉଠାଇଲେ, ନୃପ,
ଭୁଇଁରୁ ଉଠିବ ଜାଣ ।
ବୋଲି ଏତେ ସ୍ୱପ୍ନ ହେଲେ ଅନ୍ତର୍ଦ୍ଧାନ,
ନିଦୁ ନରମଣି ଉଠି,
ସ୍ୱପନ ଚରିତ କହି ସଜ୍ଜନେ
କାନ୍ଦିଲେ କପାଳ ପିଟି ।
କହିଲେ, "କ ମହାପାତକୀ ମଣ୍ଡିରେ
ଜନମ ଥିଲି ମୁଁ ପାଇ,
କ ଲଭ ଜୀଇଁ ମୋ, ପାତାଳେ ଯେବେ ହେ
ପଶିବେ ଜଗତସାଇଁ
ଚେଜ୍ୟା କଲେ ଦୁଃଖେ ଗ୍ରଜଭୋଗ ନୃପ,
ବରଜି ସୁନା ଉଆସ,
ମାଟିରେ ଶୋଇଲେ ପାକାନ୍ନ ଭୁଞ୍ଜିଲେ,
ତପସ୍କନା କଲେ ବାସ ।

Digitized by srujanika@gmail.com

ସେ ଧନୁ ଛକୋଡ଼ି ବରଷ ତ ଗଲା
ଛଅ ଯୁଗ ପର ବଡ;
ଗୁମ୍ଫକୁ ମିଶାଇ ସ୍ୱର ମନ୍ଦାରାଜା
ସ୍ୱେଗ କରଗଲେ ଷିଦ ।

'ଖୋଜ ବାଲି ମଧ୍ୟୁ କାଢ଼ିବ ଦେଉଳ',
କେହୁ ନ ଧଇଲେ ତୁଣ୍ଡେ,
ପାସୋର ସେ କଥା ଗୁନ୍ଥିଲେ ବାଟୋଇ,
ପକାଇ ପାଦ ତା ମୁଣ୍ଡେ ।

ଏବେ ନୃପ ବଳେ ଜିଣି ଅସୁରଙ୍କ
ଅଇଲା ଗାଲମାଧବ;
ସ୍ୱଳତେ ସ୍ୱରଯା ଥିବ କାଳ୍ପ ବନେ,
ଗୁଡ଼ ଯାଉଥିବ ଜୀବ ।

ତେବେ ହେଲେ ଯାର ଖୋଳିଲା ଦେଉଳ
ପ୍ରିୟରେ ସ୍ୱହିଲା କାନ୍ଥି,
ଭକ୍ତ ଡାକେ ଆଜ ବନେ ହୋଇଛନ୍ତି
ମର୍ତ୍ତ୍ୟେ ତ୍ରିଭୁବନସାଇଁ ।"

କହୁ ହାତବାଡ଼ି ଅଗେ ଭରା ଦେଇ,
ନଇଁ ହଟିଗଲା ବୁଢ଼ା
ବୃଜ ଆଖି ଖଣ୍ଡେ ଦୂରେ ଚଳିଲା ଲୋ
କାର୍ଯ୍ୟ ପୂର୍ତ୍ତି ହେଲା ପରା !

( ୮ )

ଖଞ୍ଜି ଦେଲେ ନୃପ ବଶାଶହେ ବାଟି,
ଅମୃତମଣୋଷ୍ଟ ଭୂମି,
ଦସି ଜଗନ୍ନାଥେ ବଡ଼ ଗହଣେ ଲୋ,
ରହିଲେ ଦେଉଳେ ପୁଣି ।

ଗାଲମାଧବଙ୍କୁ ଡକାଇ ବକସି
ଶାଢ଼ି ଦାଣ୍ଡଦେଲେ ମୁଣ୍ଡେ,
ଶୁଣାଇଲେ ଗାଇ ପ୍ରଶଂସା ତାର ଲୋ
ରାଜସଭା ମଧ୍ୟେ ତୁଣ୍ଡେ ।

Digitized by srujanika@gmail.com

ମଣ୍ଡ ସେହୁ ଗାଲମାଧବ ମଣାଣି
ପାଉଁଶେ ଯାଉଛୁ ମିଶି,
ନାଆଁ ଆଜ ମଝେ ଜାଇ ରହୁଛୁ ଲୋ
ଲୋକେ ହେଉଛନ୍ତି ଘୋଷି ।

ତା କୁଳଦୁଲାଳ ସେଡ଼ଙ୍ଗ ବକସି
ଲୁଚି ରହୁଅଛୁ ଘରେ,
ଦେବତା ବୈଷ୍ଣବେ କୁଳ ଭଗତ ଲୋ,
ଅଲେଖ ରଖିଥିବ ହେଲେ ।

କହୁଲେ ତା କଥା ବଢ଼ାଇ ଅଧିକ
ଖଙ୍ଗସ ପାଇବ ଚଣ୍ଡେ,
ଶୁଣ ଜଗନ୍ନାଥ ଦେଉଳ ଗାଥା ଲୋ
ଗାଇ ସ୍ବଲପିବ ଝଟେ ।

( ୯ )

ହଜାରେ ବର୍ଷୁ ବେଶି ଜଗନ୍ନାଥେ
ସେ ଟିକି ଦେଉଳେ ବସି
ସ୍ବଜିଲେ ବ୍ରହ୍ମାଣ୍ଡ, ଆଜ ଦେଉଳେ ଲୋ
ଉଠେ ତ ନାହାନ୍ତି ରସି ।

ଶେଷକୁ ଅନଙ୍ଗଭୀମ ଗଜପତି
ତୋଳିଲେ ବଡ଼ଦେଉଳ,
ମାଳଚନ୍ଦ ଉଣେ ଦଶ ଉଗକୁ ଲୋ,
ଦେଖ ଭାଗ୍ୟ ଥିଲେ ଭଲ ।

କେତେ ହଞ୍ଚ କଏ ମାପିଛୁ ମନ୍ଦିରେ
ଅଧା ପଟଭଟି ଜାଣ,
ଚଢ଼ି ଶିଖେ ତଳେ ଗୁନ୍ଧିଲେ ଗାଈ ଲୋ,
ମୁଷାକୁ ଦଶଇ ସାନ ।

ଏଥୁଁ ବୁଝୁଥିବ କାରିଗର ଗୁଣ,
ରଜାଙ୍କ ଭଗତ ଚଣ୍ଡେ,
ବାଇଣ ପାହାଚେ ମହାପ୍ରସାଦ ଲୋ,
ଭୁଞ୍ଜିବ ଚଣ୍ଡାଳ ହାତେ ।

Digitized by srujanika@gmail.com

କେତେ ଦେଶେ କେତେ ନାହାଁନ୍ତି ଦେବତା
ଚଣ୍ଡୀ, ବିଶ୍ୱନାଥ, କାଳୀ,
ଏକ ଏକ ପୀଠ ମାତ୍ର ବସନ୍ତି ଯେ
ନିଜ ପୃଥ୍ୱୀଖଣ୍ଡ ସ୍ଥଳ ।
ଜଗନ୍ନାଥ କାହିଁ ନୀଳାଚଳ ବନେ
ମଣିଷଜାତ ଦେଖିଲେ,
ବସି, ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଥଳ ଯେ,
ଶୁଣି ବୁଝୁଛନ୍ତି ଭଲେ ?
ଧନ୍ୟ ଏ ଓଡ଼ିଆ, ଜଗତପତିଙ୍କି
ଘରେ ଆଣି କରେ ପୂଜା,
ଦେବପୁରୀ ବୋଲି ଓଡ଼ିଶା ଦେଶ ଯେ,
ମଞ୍ଚରେ ଉଡ଼ୁଛି ଧ୍ୱଜା ।
ଜମ୍ବୁଦ୍ୱୀପେ ଯେତେ ସାଧୁ କି ଭଗତ
ଶ୍ରୀକ୍ଷେତ୍ରେ ଆସି କେ ନାହିଁ ?
ଦଣ୍ଡେ ନୀଳଚକ୍ର ଚୂଳିରେ ବସି ଯେ,
ସ୍ୱର୍ଗେ ଚାଲିଯାନ୍ତି ନାଇ ।

( ୧୦ )

କେବଳ ମର୍ତ୍ତ୍ୟ ଅଜି ବଡ଼ ସ୍ଥାନ ଏକା
ହୋଇଛି ମୁକ୍ତିମଣ୍ଡପ,
କି ଥିଲା କି ହେଲା, କେହି କି ଭାବେ ଯେ
ଦେବେ କରୁଥିବେ କୋପ ।
ପାହୁଲା ଅଧଲା ଅର୍ଜିବାର ଲୋଭେ
ଖାଇ ବନ୍ଧୁ ଧର ତହିଁ,
ଷୋଳ ଶାସନର ଯେତେ ଗୋଦସ୍ତ ଯେ,
ବୁଣ୍ଡି ହେଉଛନ୍ତି ଯାଇ ।
ନାଆଁ ଲେଖି ଜା'କୁ ଆସେ କି ନ ଆସେ,
ପଣ୍ଡିତ ଜଣକୁ ଜଣ,
ଦେଖ, କୁଣବଟୁ ସନ୍ଧ୍ୟା ବତାଇ
କାଢ଼ନ୍ତି ଗାଇମା ଗୁଣ ।

Digitized by srujanika@gmail.com

ଗୁପ୍ତ ଏ କଥା ମୁଁ କହୁବ କାହାଇ
ଶୁଣିଲେ ବାଛିବେ ଦୋଷ,
ପରଜଣଙ୍କ ଯତ୍ନେ ଅଣ୍ଟିରେ ରଖୁ ଲେ
କେହୁ ନ ବସ୍ତୁ ଶେଷ ।

*   *   *

ସ୍ତ୍ରୀଙ୍କ ଧନେ ଲେଭ ଗୁପ୍ତ ଏ ଓଡ଼ିଆ
ଯତ୍ନେ ବଳାଇଲେ ମନ,
କହ ମର୍ତ୍ତ୍ୟେ ଆଉ କେ ଷେଟୀ ଅଛି କେ
ହେବ ତାର ସମସମ ? *

---

* ପ୍ରବାଦ ଅଛି ଯେ ଗାଲମାଧବ ଘୋଡ଼ା ଚଢ଼ି ବାଲି ଉପରେ ଗଲାବେଳେ ଘୋଡ଼ା ଖୁଣ ଗୋଟାଏ ଝୁଣ୍ଟିଲା । ବାଲି ଖୋଳିବାରେ ତଳୁ ଗୋଟିଏ ଦେଉଳ ବାହାରିଲା । ସେହି ଦେଉଳଟି ହେଉଛି ଶବରଦେବତା ଜଗନ୍ନାଥଙ୍କ ଦେଉଳ, ଯାହାକୁ ନୀଳାଚଳ ବୋଲାଯାଏ; କିନ୍ତୁ ତାହା ବର୍ତ୍ତମାନ ସମୟର ବଡ଼ଦେଉଳ ନୁହେଁ । ଏ ବଡ଼ଦେଉଳ ଅନଙ୍ଗଭୀମ ଦେବଙ୍କ ରାଜତ୍ୱରେ ନିର୍ମିତ । ଗାଲଙ୍କ ବଂଶ ଙ୍କର ପୂର୍ବସ୍ଥିତି ଆଉ ନାହିଁ ।

Digitized by srujanika@gmail.com

# ମେଲାଣି ଗୀତ

ପଦ୍ମଚରଣ ପଟ୍ଟନାୟକ

[ 'ମେଲାଣି ଗୀତ'ର କବି ପଦ୍ମଚରଣ ଜଣେ ଜାତୀୟତାବାଦୀ କବି ରୂପେ ଓଡ଼ିଆ ସାହିତ୍ୟରେ ସୁପରିଚିତ । ତାଙ୍କର 'ଧଉଳି ପାହାଡ଼' ଏକ ଉଚ୍ଚ ଅଦ୍ଭୁତ କବିତା । କବି ମାୟାଧର ମାନସିଂହଙ୍କ ଭାଷାରେ ତାଙ୍କ ପ୍ରତ୍ୟେକଟି ସୃଷ୍ଟିରେ ଏକ ମୃଦୁ ଭାବୁକ ସୌରଭ ଲାଗି ରହିଥାଏ (ଓଡ଼ିଆ ସାହିତ୍ୟର ଇତିହାସ) । 'ପଦ୍ମପାଖୁଡ଼ା' ଓ ସୂର୍ଯ୍ୟମୁଖୀ' ତାଙ୍କର ଦୁଇଟି ମୂଲ୍ୟବାନ୍ କୃତି । ]

( ୧ )

ରହିଛ ଯେ ରହିଥାଅ ଚଳିଲି ମୁଁ ଆଜ ଏକା
ଆଗ ପଛେ ତୁମ୍ଭ ସଙ୍ଗେ କେବେ ପୁଣି ହେବ ଦେଖା ।
କହୁଛ କି ଗୁଣ କଣ ନ ଶୁଝି ଚଳିଲି ଅଗେ ?
ସତ ସତ କେତେ ସ୍ନେହ ଢାଳିଛ ଯେ ଯାହା ଭାଗେ ।
ଦେହ ମନ ଆତ୍ମା ମୋର ଗଢ଼ିଲି ତୁମ୍ଭରି ଦାନେ,
ତଳେ କିଛୁ ନ ଶୁଝିଲି ଏ ଜୀବନ ପ୍ରତିଦାନେ ।
ସେଥିଲାଗି ବଡ଼ ଦୁଃଖ ନ ଫୁଟଇ ମୁଖେ କଥା;
ଋଣଭାର ଶିରେ ବହି ଚଳିଲି ଦାରୁଣ ବ୍ୟଥା !

( ୨ )

ଯେହୁ ମହାଦୟା ବହି ଦେଲେ ନରଜନ୍ମ ମୋର,
ନରଦେହ ବହି କିବା କଲି ମୁଁ ପାଷାଣ୍ଡ ଘୋର !
ପାଶେ ପାଶେ ରହି ଯେହୁ କାନେ କାନେ କହି କଥା,
କେତେ ବୁଦ୍ଧି ଜାଣ ଭାଳେ ଶମିଲେ ମୋ ତପ୍ତ ମଥା ।
ବିପଦର ଦାଢ଼ୁଁ କେତେ ଆଣିଲେ ମୋ ହାତ ଧରି,
ଯେବେ ମୁଁ ମାଗିଛି ଭିକ୍ଷା ଦେଲେ ପୁଣ୍ଡି ମୁଷ୍ଟି ଭରି ।
ସଂସାରେ ଯେ କାଳେ ମୋତେ କେହି ନ କହିଲେ ଆହା,
ଆପେ ଆଗଭରି ଆସି ଦମ୍ଭ ଦେଇ ହେଲେ ସାହା !
ଅଲକ୍ଷରେ ପାଶେ ରହି ଦେଲେ ଆଶ୍ୱାସନା ଭରି,
ତନେ ହେଲେ ଡାକଥାନ୍ତି ପ୍ରାଣେଭରି 'ନାଥ ହରି' ।
ଏଡ଼େ ବଡ଼ କୃତଘ୍ନତା-ଶିଳାଭାର ଶିରେ ବହି,
ଲଜ୍ଜା ଦୁଃଖେ ନଇଁ ମଥା ଗ୍ରୁଡ଼ିଲି ଯାଜ ଏ ମହୀ ।

Digitized by srujanika@gmail.com

( ୩ )

ମା ପୃଥିବୀ, ବସୁନ୍ଧରା, କେତେ ତୋର ପାଶେ ଋଣୀ !
ନ ଜାଣେ ତୋ ସଙ୍ଗେ ଭେଟ ହେବ କି ନ ହେବ ପୁଣି ।
ବକ୍ଷେ ତୋର ନାଚ କୁଦ ଅଶିଛୁ ଯାତନା ଘୋର,
ସହିଛୁ ସେନେହଭରେ ଅଳି ଅଝଟ ମୋର ।
ବାଲ୍ୟ କାଳରେ କାଳେ ଲଗିବ ମୋ ପଦେ ତ୍ରାସ,
ଶ୍ରୀଅଙ୍ଗରେ ଆବରିଲୁ କୋମଳ ଶ୍ୟାମଳ ଘାସ ।
କେତେ ଧୂଳି ଆଣିଦେଲୁ ମୋର ଧୂଳିଘର ପାଇଁ,
ଦେଲୁ ବନ୍ଧୁ ପରିଜନ, ଦେଲୁ ଗୋ ଭଉଣୀ ଭାଇ ।
ସାଥି ଦେଲୁ, ସଙ୍ଗୀ ଦେଲୁ, ଦେଲୁ କେତେ ଫୁଲଫଳ ।
ଦେଇଛୁ ସାଧବବୋହୂ, ଦେଇଛୁ ବରଓହଳ,

*　　　*　　　*

ଆଜ ପୁଣି ସବୁ ଗୁଣ୍ଡି ଯେବେ ମୁଁ ମରିବ ଶୋଇ,
ଏ ପାଖର ସୁଖ ଦୁଃଖ ସବୁ ଏ ପାଖରେ ଥୋଇ—
ଜ୍ଞାତି ବନ୍ଧୁ ଦୁଇ ଦଣ୍ଡ କାନ୍ଦି ମୋତେ ଯିବେ ଭୁଲି,
ତୁମ୍ଭ ବିନା କୋଳେ ତୋର ନାଇବୁ ମୋ ଚିତା ଚୁଲି ।
ମୋର ଚିତାଭସ୍ମ ତୁମ୍ଭ ବୋଳିହେବୁ ଶ୍ରୀଅଙ୍ଗରେ,
ପୁନଃସ୍ନେହେ ଚିତାଧୂମେ ଦଶିବୁ ପାଣ୍ଡୁର ଖରେ ।
ଶେଷ ଅସ୍ଥି ଖଣ୍ଡି ବିନା ରଖିବୁ ତୁ କୋଳେ ଧରି,
ଏ ସଂସାରେ କିଏ ଏଡ଼େ କରେ ଏତେ ସ୍ନେହ ଭରି ?
ଏ ସବୁ କି ଭୁଲିଯିବ କାଳେ କାଳେ ବସୁନ୍ଧରା,
ଯଦି ଯାଏଁ ଏସବୁ କି ନ ହେବ ମୋ ଜପାମାଳା ?
ସ୍ୱର୍ଗସୁଖ ଅଛି ଯଦି ଏ ସବୁ କି ତହୁଁ ଊଣା ?
ଭୁଲି କି ପାରିବ କେବେ ତୋର ମା, ସ୍ନେହ କରୁଣା ?

( ୪ )

ଜନକ ଜନନୀ ପାଶେ କେତେ ଏ ଜୀବନେ ଋଣୀ ?
ଜନ୍ମଜନ୍ମାନ୍ତରେ ତାଙ୍କୁ ଆଉ କି ପାଇବ ପୁଣି ?
ମଣିଛୁ ଗଣିଛୁ ତାଙ୍କୁ ଭୂତଳେ ଈଶ୍ୱର ବୋଲି,
କିବା ଦେଲି ସେ ଶ୍ରୀପଦେ ଜୀବନ-କାନନୁ ତୋଳି !
ତୃଣ୍ଡରୁ ଆଧାର ଦେଇ କେତେ ସେ ରକ୍ଷିଲେ ପ୍ରାଣ,
କେବେ କି ବୁଝିଲି ମୁହିଁ ସେ ସ୍ନେହର ପରିମାଣ !

Digitized by srujanika@gmail.com

ପିତା ମାତା ସେନେହର କବା ଅଛୁ ପଟାନ୍ତର,
ସେ ଯେ ମହାସିନ୍ଧୁ ତାର କାହିଁ ଅବା ପଟାନ୍ତର !
ଜନ୍ମଜନ୍ମାନ୍ତର ଲଗି ସେ ଋଣ କ ଯାଏ ଶୁଝ୍ୟା,
ସେ ଅଗାଧ ସ୍ନେହସିନ୍ଧୁ କେବେ କ ହେଲଣି ବୁଝ୍ୟା !

( ୫ )

ଜୀବନେ ଯୌବନେ ଯେହୁ ହେଲେ ଆସି ଆପଣାର,
ତାଙ୍କର ମଧୁର ସ୍ନେହ ହୋଇଛୁ ହୃଦୟେ ସାର ।
ମୋହନ ଆଦେଶେ ଦନେ ତାହାଙ୍କୁ ଆଣିଲ ବର,
କେତେ କର୍ତ୍ତବ୍ୟର ଭାର ନେଲ ଅଗ୍ନି ସାକ୍ଷୀ କର ।
ପନ୍ଦ୍ରଲେ ପନ୍ଦ୍ରଲେ ଦନ ଗଡ଼ଗଲ କ ଚଞ୍ଚଳ,
ଲଗିଲ ଜୀବନେ ସ୍ୱପ୍ନ, ସ୍ୱପ୍ନମୟ ଧରାତଳ ।
ଦେଖୁ ଦେଖୁ ସୂର୍ଯ୍ୟଦେବ ଉଠିଲେ ଆକାଶେ ଯେତେ,
ଗଲ ମୋହ ଉନ୍ମାଦନା ଜୀବନ ଜଞ୍ଜାଳେ କେତେ ।
ଏଣେ ତେଣେ ବୁଲ ବୁଲ କେତେ କୁଟାକାଠି ଆଣି
ଦେଲ, ମୋ ପର୍ଣ୍ଣ କୁଟୀର ରଚଲେ ହୃଦୟରାଣୀ ।
ମୋ ବୁକରେ ନଜ ବୁକ ଆନନ୍ଦେ ସେ ନେଲେ ଧର,
ହସି ହସି ଭୁଲ ନଜେ ଦେଲେ ଆରେ ଆତ୍ମବଳ ।
ଏତେ ତ୍ୟାଗ ଏତେ ସ୍ନେହ ସହଜେ କ ମିଳେ ଭବେ,
ଆଉ ଦୂରେ ପରଶୋଧ, ଭାବଲ କ ମନେ ଲଭେ !

( ୬ )

ସ୍ନେହର ପିଉଳ ମୋର ନାଚ ଖେଳ ଗୀତ ଗାଇ,
ଦେଲେ ପ୍ରାଣେ କେତେ ସୁଖ ମୋହନ ମୁରଲୀ ବାଇ ।
ନୀରବ ନଷ୍ପଳ ମୋର ସଂସାର ମୁଖର କର,
ଦେଲେ ସେହୁ ମୁହୂର୍ତ୍ତରେ କେତେ ମୁଖ ମୃଦୁ ଭର !
କେତେ କେତେ ଯୁଗ ଆଗେ ଦେଲେ ସେହୁ ମୋତେ ସ୍ଥାନ,
କବା ଦେଲ ସେମାନଙ୍କୁ ପାଇ ଏତେ ପ୍ରତଦାନ !

( ୭ )

ପଥେ ଘାଟେ କେତେ ପୁଣି ଦୈବାଦେଶେ ଦେଇ ଦେଖା,
ହୃଦୟେ କଲେ ସେ ମୋର ସେ ଦେଖା ପଥରଲେଖା ।

Digitized by srujanika@gmail.com

କେ କେତେ ନୟନମୁଖେ ଧରି ସ୍ନେହ ସୁଧାଂଶୁ,
ଦେଖି ମୋ ତୃଷାର୍ତ୍ତ ପ୍ରାଣ ନେଇଛନ୍ତି ତୃଷା ହରି ।
ସବୁ ଭୁସ୍କାବାଜି ପରି ଲିଭି ଆଗେ ଯାଏ ଭାସି,
ମରୁର ଉପରେ ଅବା ନବ ନୀଳ ଘନରାଶି !
ଘର ଗ୍ରାମ ବାରି ବିଲ୍ କାକ କୋକିଳର ସ୍ୱର,
ମଧୁର ପ୍ରଣୟ ସ୍ମୃତି ନେତ୍ର ଅଶ୍ରୁ ଛଳ ଛଳ ।
ବାଜିଯାଏ ଚକ୍ଷୁ କର୍ଣ୍ଣେ ଲାଗିଯାଏ ସତ ପରି,
ଦେଶ କାଳ ବ୍ୟବଧାନ ମୁହୂର୍ତ୍ତିକେ ଯାଏ ଟଳି !

( ୮ )

କେତେ ଆଶା କରି ମୁହିଁ ଆସିଥିଲି ଏ ସଂସାରେ,
କି ଅବା ମେଣ୍ଟିଲା ଆଜି ବୁଲିଗଲି ଘରପାରେ ।
ରହିଗଲା ସ୍ନେହ ପ୍ରୀତି ଭକତି କଲ୍ପନାଭରା,
ରହିଗଲା ମାୟାମୟୀ ସୁଧାସିକ୍ତ ବସୁନ୍ଧରା ।
ଭାବର ନୟନେ ଆଜି ଏ ମୁଖେ ସେ ମୁଖେ ଚାହିଁ,
କାହିଁ ମୁହିଁ ଗଲି ବୁଲି କେହୁ ତ ଜାଣିଲେ ନାହିଁ ।



Digitized by srujanika@gmail.com

# ମଣିଷ ଭାଇ

କୁନ୍ତଳାକୁମାରୀ ସାବତ

[ 'ମଣିଷ ଭାଇ' କୁନ୍ତଳାକୁମାରୀଙ୍କର ଏକ ଭିନ୍ନ ସ୍ୱାଦର କବିତା । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେହେଁ, ତାଙ୍କ ପ୍ରତିଭାର ଭୂସ୍ପୋବିକାଶ ଗୀତ କବିତାରେହିଁ ପରିଲକ୍ଷିତ ହୋଇଥାଏ । ଅଞ୍ଜଳି, ଅର୍ଚ୍ଚନା, ଉଚ୍ଛ୍ୱାସ, ଭ୍ରାନ୍ତି, ପରଶମଣି, କାଲି ବୋହୂ ପ୍ରଭୃତି ପଦ୍ୟ ଓ ଗଦ୍ୟକୃତି ତାଙ୍କର ଓଡ଼ିଆ ସାହିତ୍ୟକୁ କାଳଜୟୀ ଅର୍ଘ୍ୟ । ତାଙ୍କ କବିତାରେ କେଉଁଠି ଆମେ ତାଙ୍କର ଭକ୍ତିଭାବ ସହିତ ଜୀବନ ଦର୍ଶନର ଝଙ୍କାର, କେଉଁଠି ବା ଗଭୀର ଜାତୀୟତାବୋଧ, ପୁଣି କେଉଁଠି ମାନବିକତାର ମଧୁସ୍ପର୍ଶ ପାଇଥାଉଁ । ]

ଶୁଣ ହେ ମଣିଷ ଭାଇ !
ସ୍ତ୍ରୀର ମରିବାକୁ ବୁଢ଼ି ମରିବାକୁ
ମଣିଷ ଜନମି ନାହିଁ ।

ଶତ ହତଶ୍ୱାସେ ସାରିବ ସଂସାର ନଶ୍ୱଶେ ନିବିଡ଼ ଅନ୍ଧାରେ,
ଚିର ଶୃଙ୍ଖଳିତ, ଲାଞ୍ଛିତ, ବଞ୍ଚିତ, ପୀଡ଼ିତ କଷଣ କାରାରେ,
ଏ ନୁହେଁ ମାନବ ନିୟତି,
ଧ୍ୱଂସର ଯାତ୍ରୀ, ମୃତ୍ୟୁର ଧାତ୍ରୀ, ନୁହେଁ ଏ ବିଶାଳ ଜଗତ
ଶୁଣ ହେ ମଣିଷ ଭାଇ !
ଅମୃତ ପୀୟୂଷ ସନ୍ତାନ ତୁମେ ମରଣ ତୁମର କାହିଁ ?

( ୨ )

ଶୁଣ ଶୁଣ ନରନାରୀ !
ବିଳାସର ଲୀଳା ନିକେତନ ବିଶ୍ୱ
ନୁହଇ ସତତ କାହାରି

ନର ଅତ୍ୟାଚାରେ ଦଳିବ ଦୁର୍ବଳେ ରକ୍ତେ ପିପାସା ଶମିବ
ନତଶିରେ ସମ୍ମୁଖଶ୍ରୀପାଦେ ଅର୍ପି ଆପଣାକୁ ଆପେ ବଧିବ

ଏ ନୁହେଁ ବିଧାତା ବିଧିର,
ଧ୍ୱଂସର ଯାତ୍ରୀ, ମୃତ୍ୟୁର ଧାତ୍ରୀ, ନୁହେଁ ଏ ସୁନ୍ଦର ସଂସାର ।

Digitized by srujanika@gmail.com

( ୩ )

ଶୁଣ ଶୁଣ ବିଶ୍ୱବାସି ! ଜରମର ଶୁଭ ଉଦ୍‌ବୋଧନ ଏହିଟି,

ଧରମରେ ଭ୍ରମ ନାହିଁ,

ଉଠ ଦେବତେଜେ ତେଜ ଲାଜ ଜମ୍ବୁ ଅପମାନ ଅନ୍ଧମିକା,
ପଶୁତ୍ୱ ଦେବତ୍ୱ ପରୀକ୍ଷାରେ ଜୟୀ ଲଭ ବୀରତ୍ୱର ଟୀକା

ଋଣୀ କର ଭବସ୍ତଣେ

ତାଙ୍କ ସ୍ୱର ତସ୍ତର ପସ୍ତଣରେ ଚଳି ଦିଅ ନିଜ ପ୍ରାଣେ ।

ଶୁଣ ଶୁଣ ଅନ୍ଧଜନ ! ଷଡ଼ରିପୁଜିତ, ଦେବତା ପୂଜିତ

ତାପ୍ରଦଲେ ଉଦାସନ ।

ଶତ କ୍ଷତସ୍ଥିରେ ଶୋଣିତ ସ୍ରାବରେ ନୁହଁ କ୍ଲାନ୍ତ, ନୁହଁ କ୍ଷୀଣ
ଶତ କଲୁଷର କଳଙ୍କ କାଳିରେ ନୁହଁ ମ୍ଳାନ, ନୁହଁ ଦୀନ,

ବିଧାତାର ବରପୁତ୍ର

ଯୁଗାନ୍ତ ମୃତ୍ୟୁ ରଜ୍ଜୁ ଛିଣ୍ଡାଇ ଧର ହେ ଜୀବନ ସୂତ୍ର ।



Digitized by srujanika@gmail.com

# ପାଇକର ଯୁଦ୍ଧଯାତ୍ରା

**ଗୋଦାବରୀଶ ମହାପାତ୍ର**

[ କବି ଗୋଦାବରୀଶ ମହାପାତ୍ର ଓଡ଼ିଆ ସାହିତ୍ୟରେ ସତ୍ୟବାଦୀ ଯୁଗର ଶେଷ ମହନୀୟ ପ୍ରତିଭା । ଉଗ୍ର ଦେଶାତ୍ମବୋଧ ଓ ସଂସ୍କାର ଲିପ୍ସା ତାଙ୍କ ସାହିତ୍ୟର ବୈଶିଷ୍ଟ୍ୟ ଦିଗ । ଜାତିର ଜୀବନକୁ ବାଞ୍ଛିତ ଦିଗ୍‌ଦର୍ଶନ ଦେବା ପାଇଁ ତାଙ୍କର ବହୁ କବିତାରେ ଗଭୀର ଆଗ୍ରହ ଓ ଉତ୍କଣ୍ଠିତ ସଫଳ ଐତିହାସିକ ପ୍ରଚେଷ୍ଟା ତାଙ୍କ ଜାତୀୟ ପ୍ରୀତିର ସୁମହାନ୍ ପରିଚୟ । ସାମାଜିକ ଜୀବନର ଅପବ୍ୟୟ ବିରୁଦ୍ଧରେ ତାଙ୍କ କବିତାରେ ଆମେ ପାଉଁ ଦୃପ୍ତ ଅଭିଯାନ । ଓଡ଼ିଆ ଜାତି ତାର ହୃତ ଗୌରବକୁ ଫେରି ପାଇବା ପାଇଁ ଐତିହାସିକ ସାଧନା କରୁ—ଏହା ଥିଲା ତାଙ୍କର ଅଭୀପ୍ସା । ସାର୍ଥକ ଓ ସଫଳ ବ୍ୟଙ୍ଗ ରଚନାରେ ସମକାଳୀନ ଓଡ଼ିଆ ସାହିତ୍ୟିକଙ୍କ ମଧ୍ୟରେ ସେ ଥିଲେ ଅପ୍ରତିଦ୍ୱନ୍ଦୀ । 'କଣ୍ଟା ଓ ଫୁଲ', 'ବଙ୍କା ଓ ସିଧା', 'ପାହାନ୍ତ ତଳର ଘାସ' 'ହଠ କଙ୍କାଳ' 'ଏବେ ମଧ୍ୟ ବଞ୍ଚିଛି' 'ଜାଲ ମାଙ୍କ୍ରାଣୀ', '[illegible]ଦିନେ ମନ୍ତ୍ରୀ ଥିଲି' ତାଙ୍କ ଅନନ୍ୟ ସାଧାରଣ ପ୍ରତିଭାର ସୁପରିଚୟ ଦେଇ ପାରିଛି । 'ପାଇକର ଯୁଦ୍ଧଯାତ୍ରା' କବିତାଟି ତାଙ୍କର 'ପାହାନ୍ତ ତଳର ଘାସ'ରୁ ସଂଗୃହୀତ ହୋଇଛି ।

ସେ ଦିନ ଅଶ୍ୱିନର ରଜନୀ ସୁଚାରୁ
ଢଳ ଢଳ ହସେ
କୁଳିଶ ଉଠେ ଅବ ପଲ୍ଲୀପୁର ଧରି
ଓଡ଼ିଶ ଦେଶେ ।
ଶୁଭିଲା ରଣଭେରୀ ବଣପାହାଡ଼ ଡରି
ସେ ଭଲ ଦିନେ,
ଉଠିଲେ କିଏ କେତେ ସମର-ଜାଗ୍ରତେ
ଆକୁଳ ମନେ ।
ନାଚିଲା ପୁରେ ପୁରେ ସେ ଘୋର ଅନ୍ଧକାରେ
ଚରଣ ଖାଲି,
ଦୂରେ ସେ ଗଜପତି ଡାକି ପଠାଇଛନ୍ତି
ଯିବାକୁ କାଲି ।
ଡାକୁଆ ଦେଲା ଡାକ, ଉଠିଲେ ପୁରଯାକ
ଡେରିଲେ କାନ,
"ଉଠରେ ଉଠ ଭାଇ, କରେ ଖଡ଼ଗ ବହି
ରକ୍ଷିବ ମାନ ।

Digitized by srujanika@gmail.com

ସମର କାଙ୍ଗାଳ ଧର ହେ ଧନୁଶର
ପାଣ୍ଡବ ଗଡ଼,
ଦୁଆରେ ବଇରୀ ସେ ଆସଇ ଝପଟାଳେ
ସମରେ ମାତ ।
ଝଣ୍ଟୋଇ ଆସ ଉଠି ଖଣ୍ଡରେ ବୋଲି ମୂର୍ତ୍ତି
ପଧାନେ ଆସ.
କି କର ପଶେନ୍ତେ ହେ ଅନ୍ତର ବେଦନ ମନେ !
ନ ଲଭେ ପ୍ରାଣ ।
ଉଠ ହେ ମୁନଷୀ, ରଜନୀ ଆଉ ଯଗ
ଲାଗିବ ରଣ,
କାହିଁ ସେ ଶ୍ୟାମଳ, ନ ହୁଅ ଚଞ୍ଚଳ
ନ ଗାଅ ଗାନ ।"
ବାଜିଲା ରଣଭେରୀ ଉଠିଲା ଥର ଥର
ସେ ପୁରେ ପ୍ରାଣ.
ଘରକେ ଜଣେ ଜଣେ ସମର ପ୍ରାଙ୍ଗଣେ
ଜୀବନ ଦାନ ।
ଶତକେ ଯୁବାଜନ ଏକୁ ଦଳଇ ଅନ
ଗଠନ ରୂପେ,
ସେ ଶତ ମୁଖେ ହସ, ଜୀବନ ପ୍ରୀତି ରସେ
କି ଅପରୂପେ ।
ସେ ଯୁବା ହୃଦତଳେ ଛୁଟୁଲେ କଳ କଳେ
ଜୀବନ-ନଈ,
ଜନନୀ ପ୍ରୀତିଭରେ ସିକ୍ତ କରିଦେଲେ
ସମର ଭୂଇଁ ।
ଶ୍ରାବଣ ଅନ୍ଧାରେ, ପଲ୍ଲୀ ତରୁ ତଳେ
ସଜଳେ ହସି,
କର୍ଣ୍ଣକେ କରବାଳ, ଜରକେ ଶୋଣେ ଢାଲ
ଲାଗିଲା ସଙ୍ଗ ।
ଡାକିଲେ ଯୁବା କେହୁ ଆଉ ତ ଘଡ଼ି ନାହିଁ
ସ୍ଥଳ ହେ ସ୍ଥଳ,
ମୋ ବାପା ଯାଇଥିଲେ ଏପରି ରଜନୀରେ
ଶୁଣିଛୁ ଯାଉ ।

Digitized by srujanika@gmail.com

ସିଂହଭୂମେ ଜାଣି, ସମରେ ପ୍ରାଣ ଦେଇ,
କହନ୍ତ ମାଆ,
ଯିବ ମୁଁ ଆଜ ଗୃଲ୍ଲ ସେ ପଦ ଅନୁସର
ସ୍ୱଭୁ ମୋ ସ୍ୱାହା ।
କହଇ ଆନ ବୀର, ହଛେ ଟେକ ଶିର,
ଏ ବାହୁ ତଳେ
ଗୃଳଣି ଦରଷର ବୀର ରକତ ଧାର
ହହୁଲ ଖେଳେ ।
ମୋ ଯର ଦଶ ଜଣ ଅରପିଛନ୍ତି ପ୍ରାଣ
ସମର ଶେଷେ,
'ନ ଜାଣେ କିଏ ଲେଖେ, ଶଙ୍ଖ ଶଲ ଯଶେ
ଓଡ଼ିଶା ଦେଶେ ?
କହେ କେ ଆନ ହଠି ଖଡ଼ଗେ ଦେଇ ମୂଠି
ଫାଲ୍ଗିର ଗୁଡ଼,
ଦୂରେ ସେ କାଞ୍ଚିଗଡ଼େ ମୋହର ଖଇ ମଲେ
ଫୁଟାଇ ଛୁଡ଼ ।
କେ କହେ ହସି "ସେ ଦିନ ମୋ ମାଉସୀ
ପଦ୍ମଲ ପାଲି—
ଆସିଲ ଘରେ, ମୋର ମଉସା ଗଲେ ଦୂର
ବିଦେଶେ ଚଳି ।
ଫେରିଲ ଦଶ ମାସେ ଖବର ଅବଶେଷେ
ଶୋଇଲେ ରଣେ,
ସେଥିର ଗଜପତି ଗଉଡ଼ ଦେଶ ଜିତି
ଥିଲେଟି ଯଣେ ।"
ଅଲପେ ଟେକ ଶିର କହଲ କେଉଁ ବୀର,
'ଶୁଣିନ ବାରେ ?
ଦିନକେ ଅଣୀ କୋଶ ବରଜି ସେକ ଶୋଷ
ମୋ ବାପା ଅରେ
ଚଳାଇ ଥିଲେ ଘୋଡ଼ା, ପଡ଼ିଲେ ପଥେ ଧସି
ବଇରୀଗଣ
ଖବର ଦେବା ଆଗେ ବନ୍ଦୀ କଲେ ମାସେ
କି ଦୁଇଗଣ ।

Digitized by srujanika@gmail.com

ନ କହୁ ପଦେ ବାଣୀ ମୋ ବାପା ବୀରମଣି,
ତେଜିଲେ ଦେହୁ,
ସହିଲେ ଦୁଃଖ ଯେତେ କିଏ ସେ ଦେଖେ ଏତେ
ସହୁଛୁ କହୁ ?"
ବାହାରେ ମାର କର କିଏ ସେ ବୀରବର
ତୋଳିଲା ତାନ—
ଦକ୍ଷିଣ କବାଟର ବୃକୁଟି ଲମ୍ବା ବାଡ଼
କୁଳଶୂ ଟାଣ ।
ଅବର କହେ କେହୁ, ବୃକେ ବୃହାଇ ଲହୁ
ଲେଖିଲେ ଚଠି
ପାଇକସ୍ୱ କୁଳେ ସେ କାଳେ ଥିଲେ ବୀରେ
ଗରବେ ମାଡ଼ି ।
ରକତ ଚଠି ଧରି ସମରେ ଗଲେ ଚଲି
ସେ ବୀର ସୁତ
କହିଲେ ବାପା ମୋର—ଲଗ ରେ ଥର ଥର
ଆସିଛୁ ମୁଁ ତ ।
ବରଷ ଦଶ ମତେ, ବଡ଼ାଅ ଯାହା ମୋତେ
ପାଳିବ ଏଥି
ପାଇକସ୍ୱ ସୁତ ! ନ ଫେରି ପାରେ ସେ ତ
ନ ଜାଣେ ଧୃତି ।
ଏପରି କେତେ କଥା, କିଏ ସେ ଗାଇବ ତା
କଲମ ମୁନେ
କହିଲେ ବଣ୍ଟାଳ, ବାହୁଜୀପଡ଼ି ବୀର,
ଗରବପଣେ ।
କହିଲେ ଡମ୍ପଡ଼ି, କିଏ ଯେ କେତେ ଉଠି
ଗାଇଲେ ଗୀତ,
ଫାଟିଲା ସିନ୍ଦୂର, ହସିଲା ଅବା ଧର
ବଜନ୍ତେ ମାଡ଼ି ।
ସମର ଯାତ୍ରା ଏ, ଖୁଲିଲେ ହର୍ଷେ
ପକ୍ଷୀ ବୀରେ,
କେ ଗାଏ ବାପ ଗୁଣ, ଧରଇ ଖାଇ ନାମ
ଆବେଗଭରେ ।

Digitized by srujanika@gmail.com

ପଛରେ ଢୁଲଢୁଲ ନାଗ୍ରାଏ ଦେଲେ ଚୋଳି,
ଶଙ୍ଖ ବାଜେ,
ରକତ ଉଠେ ତାତ, ଥରଲା ବସୁମତୀ
ସମର ସାଜେ ।
ଫେରିବା ଆଶା ଧଲେ ନାହିଁ ଯେ ହୃଦୟରେ
ବିଜୟ ବିନା,
ମରଣେ ନାହିଁ ଭୟ, ଓଡ଼ିଆ ଦୁର୍ଜୟ
ଜଗତଜଣା ।



# ପ୍ରଳୟ-ପ୍ରେରଣା

**ଅନ୍ନଦାଶଙ୍କର ରାୟ**

[ ଓଡ଼ିଆ ସାହିତ୍ୟରେ ସବୁଜ ଗୋଷ୍ଠୀର ଅନ୍ନଦାଶଙ୍କର ଅନ୍ୟତମ ବଳିଷ୍ଠ ପ୍ରତିଭା । 'ସବୁଜ ଅକ୍ଷର'ରେ ତାଙ୍କର ଗଦ୍ୟ ଓ ପଦ୍ୟକୃତି ସନ୍ନିବିଷ୍ଟ ହୋଇଛି । 'ବାସନ୍ତୀ' ଉପନ୍ୟାସର କେତେକ ପରିଚ୍ଛେଦରେ ମଧ୍ୟ ଆମେ ତାଙ୍କର କଳାକୁଶଳତାର ପରିଚୟ ପାଇଥାଉଁ । 'ପ୍ରଳୟ ପ୍ରେରଣା 'ସବୁଜ କବିତା'ରୁ ସଂଗୃହୀତ ହୋଇଛି । ]

( ୧ )

ଅଗ୍ନିକଣା ! ଅଗ୍ନିକଣା !
ଦେହଦୀପେ ଜାଳ ଦୀପ୍ତ ଶିଖା,
ତୀବ୍ର ତେଜେ ଦହିବି ମୁଁ
ଜଡ଼ତାର ଅନ୍ଧ-କୁଜ୍‌ଝଟିକା ।
ଶକ୍ତିମଦେ କ୍ଷିପ୍ତ କର —
ଶକ୍ତିପାଇଁ ସର୍ବାଙ୍ଗ ଅଧୀର;
ଆଲୋକ ଆସବ ଦେଇ
କର ମୋତେ ଉନ୍ମାଦ ମଦିର ।

ଝଞ୍ଜାବାୟୁ ! ଝଞ୍ଜାବାୟୁ !
ଡାକ ମୋତେ ପ୍ରଳୟ ଆହବେ,
ମୂଢ଼ ମୂକ ଧରିବକ୍ଷେ
ମାତିବି ମୁଁ ସୋଲ୍ଲାସ ତାଣ୍ଡବେ ।
ମୋତେ କର ବଂଶୀ ତବ—
ବଜାଇବ ଭୈରବୀ ରାଗିଣୀ;
ଝଞ୍ଜାରାଣି ! ମୋ ସଙ୍ଗୀତେ
ମିଶୁ ତବ କଙ୍କଣ କିଙ୍କିଣୀ ।

ମୃତ୍ୟୁମନ୍ତ୍ରେ ଦୀକ୍ଷା ଦିଅ
ଦିଅ ମୋତେ ଜ୍ୱଳନ୍ତ ଜୀବନ,
କଣ୍ଠେ ମୋର ବଜ୍ରବାଣୀ,
ନେତ୍ରେ ମୋର ପ୍ରଳୟ ଦୀପନ ।

Digitized by srujanika@gmail.com

ଅନନ୍ତ ଜୀବନମୋଦେ
ଅବହେଳେ ମୂର୍ଚ୍ଛିବ ମରଣେ,
ସମାଜେ ମାନବ ନାହିଁ,
ଲୋକମତ ଦଳିବ ଚରଣେ ।

ଝଟିକା ମୁଁ—ବହି ଯିବ
ଦେଶପରେ, ଯୁଗର ଉପରେ,
ଅନଳ ମୁଁ—ଦହିଯିବ
ଅର୍ଣ୍ଣବେ, ସ୍ଥଳରେ ଅକାଶରେ ।

ଯେତେ ପାପ, ଯେତେ ମିଥ୍ୟା,
ଯେତେ ମୋହ, ଯେତେ ପ୍ରବଞ୍ଚନା,
ଧର୍ମ ନାମେ, ନୀତି ନାମେ,
ଜାତି ନାମେ ଯେତେ ଆବର୍ଜନା,

ବୈଷମ୍ୟର ଭେଦରେଖା,
ଭଣ୍ଡାର ଯେତେ ଆଚ୍ଛାଦନ,
ଦୁର୍ବଳର ହାହାକାର,
ପୀଡ଼ିତର ମରମବେଦନ —

ଊର୍ଦ୍ଧ୍ୱପଦେ ଧରଣୀର
ଦୁଃଖ ଶୋକେ ଭରା ଅର୍ଘ୍ୟଥାଳି—
ନିଷ୍ଠୁର ନିର୍ମମ ମୁହିଁ,
ନିର୍ବିକାରେ ସବୁ ଦେବ ଜାଳି ।

ଛିନ୍ନ କର ଧ୍ୱସ୍ତ କର
ଯେତେ ବାଧା ଯେତେକ ବନ୍ଧନ,
ମାନବ କଳଙ୍କସ୍ତରେ
ରଚିବି ମୁଁ ପ୍ରଳୟ-ଇନ୍ଧନ ।

ଖଣ୍ଡ ଖଣ୍ଡ କରି ସବୁ
ଭଗ୍ନ କରି ଚୂର୍ଣ୍ଣ କରି କ୍ଷଣେ
ନିକ୍ଷେପିବ ବହୁଦୂରେ
ବିସ୍ମୃତିର ଗୁପ୍ତ ଗୃହକୋଣେ ।

Digitized by srujanika@gmail.com

ଏହି ଭସ୍ମ ଅବଶେଷ
        ଉପରେ ମୁଁ ରଚିବି ନନ୍ଦନ—
ମର୍ତ୍ତ୍ୟରେ ଅମରାବତୀ,
        ଜଡ଼ଦେହେ ଜୀବନ-ସ୍ପନ୍ଦନ ।

( ୨ )

ମୁକ୍ତ ହୁଅ, ମୁକ୍ତ ହୁଅ,
        ଜଗତର ଯେତେ ନର ନାରୀ,
ମୃତ ସମାଜର ଶିରେ
        ସିଞ୍ଚିଦିଅ ସଞ୍ଜୀବନ ବାରି ।

ନର, ତୁମ୍ଭେ ଭୁଲି ଯାଅ
        ଅତୀତର ଦୁଃସ୍ୱପ୍ନ ଯେତେକ,
ଆଗ ଚାଲ ଅଭିମୁଖେ
        ନବ ପଥେ ହୁଅ ହେ ପଥିକ ।

ନାରି, ତୁମ୍ଭେ ଆସ, ଆସ,
        ଧର ହାତ, ହୁଅ ସହଚରୀ,
ସେବା ସ୍ନେହ ସମବ୍ୟଥା
        ବିନା ନର ବଞ୍ଚିବ କିପରି ?

ଜନନୀ ଭଗିନୀ କନ୍ୟା
        ପ୍ରାଣପ୍ରିୟା ଜୀବନସଙ୍ଗିନୀ,
ଦାସୀ ନୁହ, ଦାସୀ ନୁହ;
        ନୁହ ତୁମ୍ଭେ ରୁଦ୍ଧ ବିହଙ୍ଗିନୀ ।

ଉଚ୍ଚ ସ୍ୱରେ କହ ଉଠ—
        "ମୁକ୍ତ ମୁହିଁ, ମୁକ୍ତ ମୋ ଜୀବନ.
ମୁକ୍ତ ମୋର ପ୍ରେମ ଆଜ
        ତବ ପ୍ରେମେ ଲଭିବ ମିଳନ ।

ଅବରୋଧେ ଯେ ଜୀବନ
        ସଢ଼ିଯାଏ ଆଲୋକ ଅଭାବେ,
ଅଙ୍କୁରିତ ଯେ ପ୍ରଣୟ
        ଅରପେ ମୁଁ ସେବାଦାସୀଭାବେ,

Digitized by srujanika@gmail.com

ପ୍ରଳୟ-ପରଶମଣି
ଛୁଇଁଲାଣି ସେ ପ୍ରାଣେ, ସେ ପ୍ରେମେ,
ନବ ନର; ନବ ଯୁଗେ
ଜାଗ ତେଜ ନଥ ଅଙ୍ଗ ହେମେ ।"

ହେ ଦୁର୍ବଳ, ହେ ନଗ୍ନ,
ହୀନ ମ୍ଳାନ ଅସ୍ପୃଶ୍ୟ ଚଣ୍ଡାଳ,
ଧର୍ମଧ୍ୱଜୀ ବ୍ରାହ୍ମଣରେ
ସଯତ୍ନରଚିତ ମିଥ୍ୟାଜାଲ
ପୂଜାରେ ବଧାର୍ଥୀ କର
ଦୃପ୍ତଶିରେ ଗର୍ଜି ଉଠ ବାରେ—
"ଆଉ ମୁଁ ଭୁଲିବି ନାହିଁ
ବଧିବର ମୋର ଅଧିକାରେ ।"
ମୁକ୍ତ ହୁଅ, ମୁକ୍ତ ହୁଅ,
ପତିତ ପାତିତ ଯେତେ ଜାତି,
ପରାଧୀନ ଯେତେ ଦେଶ,
ମୁକ୍ତି ପାଇଁ ଉଠ ଥରେ ମାତି ।
ଜାତୀୟ ଜୀବନେ ଯେତେ
'ଅଛି ପାପ, ଅଛି ଆବିଳତା,
ବୈଷମ୍ୟ, ବିରୋଧ ଯେତେ,
ଅବିଶ୍ୱାସ, ଭୀରୁତା, ଭଣ୍ଡତା ।
ସବୁ ଦିଅ ନିର୍ବିଘ୍ନରେ
ନିର୍ବିକାରେ ଅନଳେ ଆହୁତି;
ତେବେ ତ ଲଭିବ ସେଇ
ଦାସତ୍ୱର ନିଗଡ଼ୁ ନିଷ୍କୃତି ।
ଜଗତର ନର ନାରୀ,
ଶୁଣ ମୋର ଅଗ୍ନିଗର୍ଭ ଧ୍ୱନି—
"ମୁକ୍ତ ହୁଅ", "ମୁକ୍ତ ହୁଅ",
ଗର୍ଜେ ଆଜି ପ୍ରଳୟ-ଅଶନି ।

●

Digitized by srujanika@gmail.com

# ଶେଷଗୀତ

ବୈକୁଣ୍ଠନାଥ

[ କବି ବୈକୁଣ୍ଠନାଥ ସବୁଜ ସାହିତ୍ୟ ସମିତିର ଅନ୍ୟତମ ସଭ୍ୟ ଓ ଓଡ଼ିଆ ସାହିତ୍ୟରେ ସବୁଜ ଚିନ୍ତାଧାରାର ମନ୍ତ୍ରଶିଷ୍ୟ ଅଭିବ୍ୟକ୍ତ । ତାଙ୍କ ସାହିତ୍ୟରେ ରୋମାଣ୍ଟିକ ଚିନ୍ତାଧାରା ସହିତ ରହସ୍ୟବାଦର ମଣିକାଞ୍ଚନ ସଂଯୋଗ ଘଟିଛି । ସେ ୧୯୦୪ରେ ଆବିର୍ଭୂତ ହୋଇ ୧୯୭୯ରେ ତିରୋହିତ ହୋଇଥିଲେ । 'କାବ୍ୟ ସଞ୍ଚୟନ' ଓ 'ହିରଣ୍ମୟ' ତାଙ୍କର ଦୁଇଟି ମନୋଜ୍ଞ ଅର୍ଘ୍ୟ । 'ଶେଷଗୀତ' ସବୁଜ ସାହିତ୍ୟ ସମିତିର ବିଶିଷ୍ଟ ଅର୍ଘ୍ୟ 'ସବୁଜ କବିତା'ରୁ ସଂଗୃହୀତ ହୋଇଛି । ]

ଜୀବନସାନ୍ଧ୍ୟ ମୋ ଭରିଛି କେତେମତେ, ନ ଦେଲି କିଛି ହେଲି
କହିବି କି ହେ ଆଉ,
ଜୀବନ ପ୍ରିୟତମ ହରିଛି ମୋ ଭରମ ତରଣୀ ମୋର ଭବ
ସାଗରେ ବହିଯାଉ ।
ଭୁଲର ଜନ ପ୍ରାଣୀ କେତେ ମିଳାଅ ଆଣି
ନୟନ ପଲକରେ ଲୁଚିଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରଇ ଟାଣି ମରତପ୍ରବାସୀ ମୁଁ
ନ ଜାଣି ଆଣେ ଦାଉ;
ତରଣୀ ମୋର ଭବ ସାଗରେ ବହିଯାଉ । ୧ ।

ମାନସହଂସ ମୁଁ ମାନସେ ଯିବି ଉଡ଼ି ମୋ ଦେଶେ ପଥ ହୁଡ଼ି
ଭରମେ ଅବିରତ,
ଅଳସ ତୃଷା କ୍ଷୁଧା ଲଭି ତୁମରି ସୁଧା ତୃପତ ହେଲି ତେବେ
ଛାଡ଼ିଲି ଏ ମରତ ।
ନିଜ ବାସନାଜାଲେ ବିକଳ ବନ୍ଧିତ,
ତମିର ଅଙ୍ଗନେ ମିଳେ କି ଅମୃତ ?
ଗ୍ରହରବି ଦୂରେ ଯିବି ପାରିବାରେ ଝମ୍ପିବି ଲଙ୍ଘି ହିମଗିରି
ଯିବି ଗୋ ବେଳ ଥାଉଁ ।
ତରଣୀ ମୋର ଭବ ସାଗରେ ବହିଯାଉ । ୨ ।

Digitized by srujanika@gmail.com

ଦେଇଛ ପ୍ରିୟପ୍ରାଣେ ଅମରପ୍ରୀତି ଭରି, ମୋ ଶିଶୁ ନନ୍ଦନେ
ଅମର ମୋର ଆଶା,
ପ୍ରଭାତ ସନ୍ଧ୍ୟାରେ ଖେଳାଇ ରୂପଚ୍ଛନ୍ଦ ବିକଳ କଣ୍ଠେ ମୋ
ଫୁଟାଇଛ ତ ଭାଷା,
ଗାଇବି ବନ୍ଧୁ ମୁଁ ଚରଣ ବନ୍ଦନା,
ସେ ଲାଗି ଏ ବୀଣାରେ ଦେଇଛ ମୂର୍ଚ୍ଛନା,
ସେ ସୁଖ କରି ହେଳା ଲଗାଇଲି ମୁଁ ଖେଳା ମିଳନ ମଧୁରାତି
ପାହିଲା ଗୃହ ଗୃହ,
ମିଥ୍ୟା-ବିପଣୀରେ ବଣିକ ମରଣ ଯେ, ନ ଚେତି ଚାଲେ ଯାହା
କଲି ମୋ ମଣି ଗୃହ । ୩ ।

ପଥହରା ତବୁ ମୁଁ ଗୋ ପଳାଇ ମୋ ପଛର, ନୟଣା ପରଶରେ
ଏଁଶଛି ଅକାଳରେ,
ନାହିଁ ତ ତେବେ ଚାଲେ ଶୋଚନା ଖେଦ ମୋର, ମୋ ମଣି
ମୋ ହୃଦୟ
ସାଗର ଅତଳରେ,
ପରାଣ କୁଞ୍ଜେ ମୋ ତାର ମୁରଲୀ ଧ୍ୱନି,
ପରାଣ ପବନେ ମୋ ତା ଶୁଭ ଆଗମନୀ,
ଜୀବନେ ଦେବା ନେବା ଭିଆଣ ସବୁ ତାର, ସେ ମହାଦାନୀ ହସେ
ଧସିଣେ ଦେଖି ନାହିଁ ?
ତା ପରଶେ ପଥହରା ଜୀର୍ଣ୍ଣ ଜୀବତରୁ ପଲ୍ଲବିତ ଅହ୍ୱା
ଶୋଚନା କିବା ଆଉ ? ୪ ।

ଚାଲ ରେ ଚାଲ ମନ ନିତ୍ୟ ମଧୁବନ, ଦେଖିବୁ ପ୍ରିୟ ରୂପ
ଅଦୂରେ ଗୋଲକରେ,
ଅଦୂର ପଥେ ଅଜି ମିଳନ ତାର ସାଥେ, ବିଜୟ ରଥେ ତୋର
ଜୀବନ ଆଲୋକରେ,
ଯାତ୍ରୀ ପଥ ତୋର ପଲକେ ହେବ ଶେଷ,
ଶେଷରେ ହଜିବ ସକଳ ତୋର କ୍ଲେଶ,
ଧନ୍ୟ ହେବୁ ଅଜି ପୁଣ୍ୟ ଚରଣେ, ଲୁଣ୍ଠି ସବୁ ପାପ
ଦୁଷ୍କୃତିର ରାହୁ
ଜୀବନ-ଦେବତା ମୋ' ଜୀବନ ପଥେ ବିଜେ, ଧରଣୀ ମୋର ତାର
ଯାଗରେ ବନ୍ଦୀଯାଉ । ୫ ।



Digitized by srujanika@gmail.com

# ଜନ୍ମ ଜନ୍ମାନ୍ତର

ଡକଟର ମାୟାଧର ମାନସିଂହ

[ ଓଡ଼ିଆ ସାହିତ୍ୟର ଏହି ଅନନ୍ୟସାଧାରଣ ପ୍ରତିଭାସମ୍ପନ୍ନ କବିଙ୍କର ଆବିର୍ଭାବ ୧୯୦୭ ମସିହାରେ ଏବଂ ତିରୋଭାବ ଘଟିଥିଲା ୧୯୭୩ ମସିହାରେ । ଉଭୟ ଓଡ଼ିଆ ଓ ଇଂରେଜୀ ଭାଷାରେ ଲିଖିତ ବହୁଗ୍ରନ୍ଥ ସେ ଆମକୁ ଉପହାର ଦେଇଯାଇଛନ୍ତି । ସମାଲୋଚକ ଚିନ୍ତାମଣି ବେହେରାଙ୍କ ଭାଷାରେ...."ସବୁଜ ଯୁଗର ଚିହ୍ନ ପରେ ପରେ ଆସି ଦେଖାଦେଇଥିଲେ କବି, ମାୟାଧର ମାନସିଂହଙ୍କ ପ୍ରତିଭା ସାମନ୍ତଧର୍ମରୁ ଏକ ବଳିଷ୍ଠ ଓ ଅପ୍ରକାଶିତ ବାତାୟନ । ଏହି ସ୍ରଷ୍ଟା ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ଏହି ଜାତିକୁ ତାଙ୍କର ଗୀତିକବିତା, କଥା ବା ଗାଥା କବିତା, ଚତୁର୍ଦ୍ଦଶପଦୀ କବିତା, ବ୍ୟଙ୍ଗ କବିତା, କାବ୍ୟ, ନାଟକ, କାବ୍ୟନାଟିକା, ସମୀକ୍ଷାଧର୍ମୀ ସାରସ୍ୱତ ପ୍ରବନ୍ଧ, ସାହିତ୍ୟର ଇତିହାସ, ପ୍ରଣୀ ଶିକ୍ଷା, କଳା ଓ ସଂସ୍କୃତି ସମ୍ବନ୍ଧୀୟ ପ୍ରବନ୍ଧାବଳୀ ଦାନ କରିଆସିଛନ୍ତି (ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ) ।" ଧୂପ, ମାଟିବାଣୀ, ହେମଶସ୍ୟ, କମଳାୟନ, ଜେମା, ସାଧବଝିଅ, ଅକ୍ଷତ, ଜୀବନଚିତା, କୃଷ୍ଣ, ପଶ୍ଚିମ ପଥିକ, ସରସ୍ୱତୀ ଫକୀରମୋହନ ପ୍ରଭୃତି ଉଚ୍ଚ-କୋଟୀର ସୃଷ୍ଟିରେ ସେ ଓଡ଼ିଆ ସାହିତ୍ୟକୁ ସୁସମୃଦ୍ଧ କରିଅଛନ୍ତି । 'ଜନ୍ମ ଜନ୍ମାନ୍ତର' ତାଙ୍କର 'କୃଷ୍ଣ'ରୁ ସଂଗୃହୀତ ହୋଇଛି । ]

ଜନ୍ମେ ଜନ୍ମେ କରିଛି ଯା' ଯେତେ ଅନ୍ୱେଷଣ
ତୃପ୍ତି ଖୋଜି ଏଣେ ତେଣେ ଧାଇଁଥିବି, ଯାହା
ବାସନାର ଚରିତାର୍ଥେ ଯେତେକ ସାଧନ,
ସେ ସବୁ ହେ ନାଥ, ତୋତେ ଖୋଜିବାର ସ୍ପୃହା ।

ଧନେ, ମାନେ, ଯଶେ, କାନ୍ତ-କାମିନୀ ନୟନେ
ହେ ପ୍ରିୟ ଭ୍ରମରେ ଯିବା ଖୋଜିଛି ମୁଁ ଚିର
ତୁମ୍ଭିଛି ସୁନ୍ଦର ତୋତେ ଆନର-ଆନନେ,
ନାନା ଦୁଃଖେ ତୋ ଲାଗିହିଁ ଢାଳିଅଛି ନୀର ।

ଦୁଷ୍ଟ ଜୀବ ନାନା ପଥେ ଖୋଜିଅଛି ଦାଣ୍ଡ
କାହିଁ ସେ ଥ ଇବ ତାର ତୃପ୍ତି ଅଧ୍ୟାହୃତ,
ଆଘାତିଛି ଖୋଲିବାକୁ ଅଗଣ କବାଟ,
କାଏ ତାକୁ ଦେବ ଯେହି ବାଞ୍ଛିତ ଅମୃତ ।

ନାନା ଫୁଲମାଳା ମୋର ଜନ୍ମ ଜନ୍ମାନ୍ତର
ଭେଟିବାକୁ ଶେଷ ଦେଖାଦେଲେ ମୋ ପ୍ରିୟବର ।

●

Digitized by srujanika@gmail.com

# ବିଶ୍ୱଗ୍ରନ୍ଥ

**କାଳନ୍ଦୀଚରଣ ପାଣିଗ୍ରାହୀ**

[ 'ବିଶ୍ୱଗ୍ରନ୍ଥ' କବିତାର ରଚୟିତା କାଳନ୍ଦୀଚରଣ ସବୁଜ ସାହିତ୍ୟ ସମିତିର ସର୍ବଶ୍ରେଷ୍ଠ ଅର୍ଘ୍ୟ । ଓଡ଼ିଆ ସାହିତ୍ୟର ଏହି ସବ୍ୟସାଚୀ ତାଙ୍କର ନିରବଚ୍ଛିନ୍ନ ସାଧନାରେ ଉଭୟ ଓଡ଼ିଆ ଗଦ୍ୟସାହିତ୍ୟ ଓ ପଦ୍ୟସାହିତ୍ୟକୁ ବହୁ ମଣିମାଣିକ୍ୟ ଉପହାର ଦେଇଅଛନ୍ତି । ସେ ଏକ ଅନାହୁତ ସାଧନାର ସାକାର ରୂପ । ପୁରୀ ଜିଲ୍ଲାର ବିଶ୍ୱନାଥପୁର ଶାସନରେ ଚଳିତ ଶତକର ପ୍ରାରମ୍ଭରେ ତାଙ୍କର ଆବିର୍ଭାବ । 'ଗ୍ରନ୍ଥିଫଳ' 'ଶେଷରଶ୍ମି', 'ସାଗରିକା', 'ଦ୍ୱାଦଶୀ', 'ମୋ କଥା କି ସତ ନୁହେଁ' ତାଙ୍କର ବହୁ ଆଦୃତ ଗଳ୍ପ ପୁସ୍ତକ । 'ମାଟିର ମଣିଷ', 'ଲୁହାର ମଣିଷ', 'ଆଜିର ମଣିଷ', 'ମୁକ୍ତାଗଡ଼ର କ୍ଷୁଧା' ପ୍ରଭୃତି ଉପନ୍ୟାସ ସାହିତ୍ୟ ସୃଷ୍ଟିରେ ତାଙ୍କର ସିଦ୍ଧହସ୍ତତାର ପରିଚୟ । ମନେ ନାହିଁ, ମହାଦୀପ, କ୍ଷଣିକ ସତ୍ୟ, ଛୁରିଟାଏ ଲୋଡ଼ା, ମୋ କବିତା ପ୍ରଭୃତି କବିତା ସଞ୍ଚୟନ ଭିତରେ ତାଙ୍କର ସୁମହାନ୍ କବିପ୍ରତିଭାର ସୁପରିଚୟ ମିଳିଥାଏ । ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ଏବଂ ନାଟ୍ୟ ସାହିତ୍ୟକୁ ମଧ୍ୟ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ]

ସୃଷ୍ଟିର ଆଦିମ କାଳୁଁ ରଚିତ ବିରାଟ ବିଶ୍ୱଗ୍ରନ୍ଥ
ନିତ୍ୟ ତାର କଳେବର ସଂଖ୍ୟାତୀତ ପୃଷ୍ଠା ବହି ପୁଷ୍ଟ;
ନିତ୍ୟ ନବ ନବ ନାମେ
ଅଙ୍କିତ ଚର୍ଚ୍ଚିତ ତାର ଅଙ୍ଗ,
ନିତ୍ୟ ନବ ନବ ଗାଥା ପ୍ରତି ପଦେ ହୁଏ କେତେ ସୃଷ୍ଟି ।

ଦର୍ଶନ ବିଜ୍ଞାନ ବିଜ୍ଞ ଅଗଣିତ କବି ଗୁଣେଶ୍ୱର
ପ୍ରାଣାନ୍ତ ସାଧନା କରି ଲେଖିଗଲେ ନିଜ ନିଜ ନାମ,
ଲେଖିଗଲେ ଜୀବନର
ଶତକୋଟି ଉତ୍ଥାନ ପତନ,
ଶତାବ୍ଦୀ ପ୍ରାଚୀନତାର ସ୍ଖଳିତ ଲେଖନୀ ଅବିଶ୍ରାମ ।

ତଡ଼ାଗ ମନ୍ଦିର ଦୁର୍ଗେ କେତେ ହର୍ମ୍ୟେ କେତେ ସ୍ତୂପେ ବର୍ତ୍ମେ
ଲିଖିତ ରହିଲା ନାମ, ବର୍ଣ୍ଣିତ ହୋଇଲା ଯଶରାଶି,
ସ୍ତମ୍ଭ କରି ଦେହମନ
ଲୋଡ଼ି କେତେ ଅକ୍ଷୟ ଗୌରବ,
ବଂଶର ମର୍ଯ୍ୟାଦା ପରେ ସ୍ଥାପି ନିଜ କୀର୍ତ୍ତି ଅବିନାଶୀ ।

Digitized by srujanika@gmail.com

ଆପଣାର କୀର୍ତ୍ତି ଲଗି ଅପରର ଲୋଡ଼େ ଅପକୀର୍ତ୍ତି
ଲେଖିବାକୁ ନଜ ନାମ ଅପରର ନାମ ଦଏ ପୋଛ୍,
ଆନର ଆଣଇ ମୃତ୍ୟୁ
ନଜେ ଲୋଡ଼େ ଅମର ପଦବୀ,
ସ୍ୱୀୟ ସୁଖ ଆଣେ ପୁଣି ପରପ୍ରାଣେ ଦୁଃଖ ଦଏ ରଚ ।

କେତେ ନାମ ତଳେ ସେହ୍ନ ହାହାକାର କୋଟି ମାନବର
ଜଡତ ରହଚ୍ଛ ଗଢ୍ନେ ପ୍ରତଧ୍ୱନ ଅଦମୀ ଆକାଶ,
ଅସିମୁନେ କେତେ ନାମ
କ୍ଷତ ରୂପେ ଖୋଦତ ରୁଧିରେ,
ମାନବର ଶ୍ରମ ଘର୍ମେ ବହ୍ନ କେତେ ରୁଦ୍ଧ ହାହୁତାଶ ।

ସୁକୁମାର କେତେ ନାମ କୁସୁମ ସମାନ ଉଠେ ଫୁଟି
ଦଶ ଦଶେ ମନୋରମ ସଉରଭ କର ବକୀରଣ,
ସୁମହାନ କଲ୍ୟାଣର
ଗୁଣିଦେଇ ଆଲୋକ ସଙ୍ଗୀତ
ରହଚ୍ଛ ରଚତ କେତେ ଯୁଗ ବ୍ୟାପୀ ଆଶିଷ ବଚନ ।

ଧରାରୁ ନଭଚ୍ଛ ଚନ୍ଦ୍ର ଖ୍ୟାତପୂର୍ଣ୍ଣ କଳାର କଳାପ
କାଲକୀଟ ଗ୍ରାସେ ପୁଣି କେତେ ନାମ ଲଭଚ୍ଛ ବଲୟ,
ଅଦୃଶ୍ୟ ହୋଇଚ୍ଛ କେତେ
ବସ୍ମୃତର ମସୀରେ ଆଚ୍ଛନ୍ନ
ସୁବର୍ଣ୍ଣର ବର୍ଣ୍ଣେ ପୁଣି ଘୋଷେ କଏ ଆପଣା ବଜୟ ।

କେବଳ ରହଚ୍ଛ ନାମ, ଅର୍ଥହୀନ, ମୂଲ୍ୟହୀନ ଭାଷା
ଧାଇଚ୍ଛ ଆଲୋକ, ମାତ୍ର ଅଚ୍ଛ ଏକ ରୂପହୀନ ଗ୍ରାସ୍ୟା,
କଜ୍ଜଳ ନୟନ ନାହିଁ
ଅଚ୍ଛ ଖାଲି ଅଶ୍ରୁର ଆକୃତ,
ନାହିଁ ରକ୍ତ ଜବାଧର, କେବଳ ହାସ୍ୟର ଏକ ମାୟା ।

ତଥାପି ସେ ଭଗ୍ନଗାତ୍ରେ ନତ ଲକ୍ଷ ନାମ ହୁଏ ଲେଖା
ପୁରାଇ ପ୍ରାଚୀନ ପତ୍ର ସଂଖ୍ୟାତୀତ କ୍ଷରଇ ଅକ୍ଷର,
ସଙ୍କେତର ବାଣୀ କେତେ
ଜୀବନ୍ତ କରଇ ତା'ର ଭାଷା,
ବସ୍ମୟସୂଚକ, ପୁଣି ଚନ୍ଦ୍ର କେତେ ପ୍ରଶ୍ନବାଚକର ।

Digitized by srujanika@gmail.com

ସକଳ ସଙ୍କେତ ଅଛୁ, ପଢ଼ନାହିଁ କାହିଁ ପୂର୍ଣ୍ଣଚ୍ଛେଦ
ମୌଳିକ ସମସ୍ୟା ଗଣି ଜାଣିନାହିଁ ଯେଣୁ ସମାଧାନ,
ଚିରନ୍ତନ ସେ ଗ୍ରନ୍ଥର
ଭୁଲିଅଛୁ ବିରାଟ ରଚନା,
ନାହିଁ କ୍ଳାନ୍ତି, ନାହିଁ ଶେଷ, ନାହିଁ ତାର ଚାଲେ ଅନୁସନ୍ଧାନ

ଉଚ୍ଛଳ ମୁଖର ହେଉ ମୂକଲେଖ ନୂତନ ସ୍ପନ୍ଦନେ
ଦଗ୍ଧ ପ୍ରୀତ ଶ୍ରଦ୍ଧା ଦୁଃଖ ଭସ୍ମ ବିଷାଦର ପୁଣ୍ୟଗାଥା,
ଲୁପ୍ତ ଅତୀତର ଧୂଳି
ବହିଆଣେ ପ୍ରାଣର ସମ୍ବାଦ,
ସର୍ଜନର ଉପରେ ସୃଷ୍ଟି ଲେଖି ମହାମରଣର ଖାତା ।



# ଉଜ୍ଜ୍ୱଳ ପୁରୁଷ

ସଚ୍ଚିଦାନନ୍ଦ ରାଉତରାୟ

[ 'ଉଜ୍ଜ୍ୱଳ ପୁରୁଷ' କବିତାର କବି ସଚ୍ଚିଦାନନ୍ଦ ରାଉତରାୟ ଆଧୁନିକ ଓଡ଼ିଆ ସାହିତ୍ୟର ଗର୍ବ ଓ ଗୌରବ । ଏହି କବିତାଟି କବି ଗୋଦାବରୀଶ ମିଶ୍ରଙ୍କ ଦେହରକ୍ଷା ପରେ ତାଙ୍କର ଉଦ୍ଦେଶ୍ୟରେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ବନମ୍, ଶ୍ରଦ୍ଧାଞ୍ଜଳି, ଚିତ୍ରଗ୍ରୀବ, ଅଭିଯାନ, ପଲ୍ଲୀଶ୍ରୀ, ପାଣ୍ଡୁଲିପି, ମାଟିର ମୂଲ, ସ୍ୱାଗତ, ପାଥେୟ, କବିତା ୧୯୬୨ ପ୍ରଭୃତି ଓଡ଼ିଆ ସାହିତ୍ୟକୁ ସଚ୍ଚିଦାନନ୍ଦଙ୍କ ଉଲ୍ଲେଖଯୋଗ୍ୟ ଅର୍ଘ୍ୟ । ଜଣେ ପ୍ରଗତିଶୀଳ କବିରୂପେ ଓଡ଼ିଆ ସାହିତ୍ୟରେ ସେ ସୁପରିଚିତ । ଉଭୟ ଗଦ୍ୟ ଓ ପଦ୍ୟ ରଚନାରେ ସେ ସ୍ୱକୀୟ ବୈଶିଷ୍ଟ୍ୟର ପରିଚୟ ଦେଇପାରିଛନ୍ତି । ]

ନଗରଜନେ କି କହିଲେ ? କି କହିଲେ ଗ୍ରାମୀଣ ମଣିଷ
ଏଇ ପଚ୍ଛୁଆର ଭିତେ ଶୁଣିଛ କି ହେ ଗୋଦାବରୀଶ ?
ବକୁଳ-ବ୍ୟାକୁଳ ବନେ, ସହରର ନାଲି ଧୂଳି ଛକେ
ଅଥବା ଝରୋଳା କୁଞ୍ଜେ, କୁଶଅନା ପାହାଡେ, ପାହାଚେ
ଦେଖୁଛ କି କେତେ ଭିଡ଼, କେତେ ବୃଷ୍ଟି, କେତେ ଖରା ଶୁଖେ
କେତେ ସନ୍ତୋଜିତ ବାଣୀ, ବିବୃତି ବା କାନେ କୁହାକୁହି,
ଏ ସବୁର ତଳେ କିନ୍ତୁ ସତ୍ୟ ଏକ ଦେଖୁଅଛୁ ମୁହିଁ ।
କୋଟି ଆଖି ତଳେ ଗଳେ
ଝରି ଶୁଖେ—
ଟିକ୍‌ଟିକ୍ ଲୁହର ସଜୋଇ ।
ସଭାରେ ବା ସଭାଗାରେ ଅବା କେଉଁ ସନ୍ଧ୍ୟା ଆସରରେ
ତୁମରି ସୁନ୍ଦର ମୂର୍ତ୍ତି କାନ୍ଥେ କାଚେ ଦେହଳି ଦବାନେ ।
କାଗଜେ ବା ବ୍ୟାନରରେ ଅବା କେଉଁ ମାସିକ ପତ୍ରରେ
ହୁଏ ତ ଉଠିବ ଫୁଟି, ବାରେ ବାରେ ଦେଇ ପୁଣି ଧରା
ତୁମରି ସରଳ ସୌମ୍ୟ ଭୋଳା ଆଉ ରଙ୍ଗର ଚେହେରା ।
ତୁମରି ସଂସ୍କୃତ ରୂପ ହୁଏ ତ ବା ପଥରେ ପିତଳେ
ସହରର ଚୌମଥାରେ, ସାଦା ଦୁଧେ ଧୁଆ ମଖମଲେ
ହୁଏ ତ ବା ଦେଇଯିବ ପଥିକରେ ଭୂମିର ଭସାରା
ସମସ୍ତର ଚଉହଦ୍ଦାରେ, ଯାଆ ଆଉ ଦାଣ୍ଡରେ ଏହିରି !

Digitized by srujanika@gmail.com

ଏ ସବୁକୁ ଜିଣି କଲୁ ମନେ ମୋର ହେ ଗୋଦାବରୀଶ,
ଉଦ୍ଭବ ଅମର ହୋଇ—

ତୁମର ସେ ହସ ହସ
ଗାରେ ସୁନା ଝଣ ।

ଚଲାବାର ହ୍ରଦଜଳେ ଘଂଟଶିଳା ଜଙ୍ଗଲର ପକ୍ଷୀ !
ତୁମର ଡେଣାର ଦାଗ ଆଜି ସୁଦ୍ଧା ଯାଇନ ତ ରକ୍ଷି

ହାଓସ୍କାର ଅଶାନ୍ତ ବୁକେ; ଆକାଶର ପରମ ଶୂନ୍ୟତା
ଅଜି ବି ରଖିଛ, ସଖି ତୁମର ସେ କାକଳିର କଥା
ଆଜି ବି ଆଖିରେ ନାଚେ

କେଉଁ ଏକ ଗ୍ରାମ୍ୟ ନଦୀତଟେ
ଶ୍ରୀଭ୍ରଷ୍ଟ ତୁମ ମୂର୍ତ୍ତି ସମସ୍ତର ଦୃଗ୍‌ବାଣ କାଟେ ।

ଅବା କେଉଁ ମୁମ୍ବୂର୍ଷେ ନଭବକ୍ଷେ ମରଣ ଫେରଂତା
ରୂପାର କଠଉ ଗୋଡ଼େ କାନ୍ଧେ ଧରି ସୁନାର ପଇତା
ଦେଖାଦେବ ତୁମେ କେବେ ଜହ୍ନଉଠା ଫୁଲଫୁଟା ବେଳେ
ଉତ୍କଳ ପୁରୁଷ କବି ରାଇ ଅବା କୋଷ୍ଟାର ସହରେ ?

ଧୂଳଆର ଧପ୍‌ପଡ଼ ଧଇଁସଇଁ, ଝାଁ ଧରଷଣ
ଘସର ସଡ଼କଗୁଲା ପାର ହୋଇ ତୁମେ କି (୧) ବିହ୍ଵଲଣ
ଖୋଜିଛ ଜମିଙ୍କେ କହୁ ? ଖୋଜି ଖୋଜି ପଡ଼ିଅଛ ଶୋଇ
ସେ କି କନ୍ୟା ? ସେ କି ନଦୀ ? ଅବା ଏକ
ସ୍ୱପ୍ନର ମଣୋହ୍ଵ ?

ଆଜି ଏ ଗିବାର ବେଳେ କହିବ କି ହେ ଗୋଦାବରୀଶ !
ସାର୍ଥକ ହୋଇଛ ଖୋଜା ? କେତେ ଦୂର ?
କେତେ ଦୂରେ
ସ୍ୱପ୍ନର ତୁମ (୨) ବିଷ୍ଟ୍ରେଚିଣ ?

ଜଘଞ୍ଚ ତମାଳ ଶାଖା, ଘନମେଘେ ବଜୁଳର ଅଗ୍ର
ଚମକି ଚମକି ଜବ ଜୀବନର ଏଇ (୩) କୁସୀନାଗ୍ର—
ଏଇ କି ତୁମର ଶେଷ ? ନା ଆରମ୍ଭ ? ଏହା କେଉଁ ଛବି ?
ଏଇ ଜଳ, ଏ ତମାଳ—ନାରକେଳ, ବକୁଳ, କରବୀ

( ନୋଟ୍—୧ । ବିହ୍ଵଲଣ—ବିଖ୍ୟାତ କବି । ୨ । ବିଷ୍ଟ୍ରେଚିଣ—ଇଟାଲିର ମହାକବି ଦାନ୍ତେଙ୍କ ପ୍ରିୟା । ୩ । କୁସୀନାଗ୍ର—ଗୌତମ ବୁଦ୍ଧଙ୍କ ମହାପରିନିର୍ବାଣସ୍ଥାନ ।

Digitized by srujanika@gmail.com

ଫୁଲ୍ ଆଉ ଜହ୍ନ ଆଉ ମାଟି ଆଉ ବାଲିର ପାତାଳେ
ଏଇଠି କି ଶୋଇଥିବ ବାଳିକୁଢ଼େ (୪) 'ଯୋଡାଲ ଦେଉଳେ' ?
ଏଇ କଣ ଭଲ ଲାଗେ ? କହ କହ ହେ ଗୋଦାବରୀଶ !
ପହ୍ଲଲ ପୋରୁହାଁ ତଣ୍ଡ ପରି
ଚକ୍ ଚକ୍ —
ତୁମ ମୁଗ୍ଧ ହସର ଥାଳିସ୍ ।



୪ । ଯୋଡା ଦେଉଳ — ପଣ୍ଡିତ ଗୋଦାବରୀଶଙ୍କ ଲିଖିତ ଗାଲିମାଧବଙ୍କ ସମ୍ବନ୍ଧୀୟ କବିତା ଦ୍ରଷ୍ଟବ୍ୟ··· )

Digitized by srujanika@gmail.com

# ରକ୍ତ ଓ ଦୁଗ୍ଧ

**ରାଧାମୋହନ ଗଡ଼ନାୟକ**

[ କବି ରାଧାମୋହନ ଗଡ଼ନାୟକ ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଖ୍ୟାତନାମା କବି । ତାଙ୍କ କବିତା କେତେବେଳେ ରୋମାଣ୍ଟିକଧର୍ମୀ, କେତେବେଳେ ବାସ୍ତବତାବୋଧରେ ଜ୍ୟୋତିର୍ମୟ, କେତେବେଳେ ପୁଣି ଜୀବନର ବିବିଧ ଘଟଣାବଳୀର ରସୋତ୍ତୀର୍ଣ୍ଣ ଶିଳ୍ପରୂପ । ରୂପ ଓ ପ୍ରଣୟର, ସତ୍ୟ-ଶିବ ଓ ସୁନ୍ଦରର ନିପୁଣ ଚିତ୍ରକର ରୂପେ ସେ ସୁପରିଚିତ । ଗାଥା କବିତା ରଚୟିତା ରୂପେ ସେ ଅନନ୍ୟସାଧାରଣ ସିଦ୍ଧିର ଅଧିକାରୀ । ତାଙ୍କ କବିତାର ଭାଷା ଲଳିତ ଓ ମଧୁର, କାନ୍ତ-କୋମଳ । ତାଙ୍କ ଉତ୍କଳିକା, କାବ୍ୟ ନାୟିକା, କୈଶୋରିକା, ଶାମୁକାର ସ୍ୱପ୍ନ, ପଶୁପକ୍ଷୀର କାବ୍ୟ, ସୂର୍ଯ୍ୟ ଓ ଅନ୍ଧକାର ବହୁ ପ୍ରଶଂସିତ ସୃଷ୍ଟି । ରକ୍ତ ଓ ଦୁଗ୍ଧ ତାଙ୍କ 'ଶାମୁକାର ସ୍ୱପ୍ନ'ରୁ ସଂଗୃହୀତ । ]

"ଉପାୟ ନାହିଁ ତ ଆଉ
ଦାଣ୍ଡୀବନ୍ଧୁ, କହ ଏବେ ଯାଇ
ଦାଦାଙ୍କର ନିମନ୍ତ୍ରଣ
ଆଜି ମୁହିଁ ରଖିପାରୁ ନାହିଁ ।

ଚର୍ମକାର ବନ୍ଧୁ ଜଣେ
ଆଜି ସଞ୍ଜେ ଡାକିଛନ୍ତି ମୋତେ
ନାମ ସଙ୍କୀର୍ତ୍ତନ ପାଇଁ
ତାହା ଏଡ଼ି ପାରିବି କେମନ୍ତେ ?"

ପିତୃବ୍ୟ ବାରତା ପାଇ
ରୋଷ ଭରେ ବୋଇଲେ ବଚନ,
"ଦୁର୍ଗତ ନାନକ ଆଜି
ରଖିଲନି ମୋର ନିମନ୍ତ୍ରଣ ।

ବୁଝିଲି ନି କାହା ପୁଣି
କାହାର ସେ ଉତ୍ତରାଧିକାରୀ,
କେଉଁ ବଂଶଧର ସିଏ
ଆଜି ହେଲା କେଉଁ ପଥଗାମୀ ।

Digitized by srujanika@gmail.com

ବଳାସର ଆୟୋଜନ
ଆମୋଦର ଉପସ୍ଥର ତେଜ
ସାନ ସାନ ଜନ ମେଳେ
ଘୂରୁଅଛ କେଉଁ ଶ୍ରେୟ ହେଜ ।

ଗୁଣିଲନ କଏ ମୁହିଁ
ଏ ଖଣ୍ଡର କେଡ଼େ ଜମିଦାର
ରଖିଲନ ମୋର ମାନ
ବଡ଼ ହେଲ ଚର୍ମକାର ତାର ।

ବାର୍ତ୍ତାବହ କ ଭାବୁଛ ?
ପୁଣି ଯାଅ ତା ପାଖକୁ ଯାଅ
ଆସିବାକୁ ପୁଣି କହ
ଏଇ ମୋର ଶେଷ ଅଭିପ୍ରାୟ ।

ଡଗର ଦେଖିଲା ଯାଇ
ଚର୍ମକାର କୁଟୀର ପ୍ରାଙ୍ଗଣେ
ନାନକ ଗୁଚର ଗଣେ
ମାଧଚନ୍ଦ୍ର ନାମସଙ୍କୀର୍ତ୍ତନେ ।

ଜଣାଇଲା ଅଭିପ୍ରାୟ—
"ଭୋଜନର ଦ୍ରବ୍ୟ ଆୟୋଜନ
ହୋଇଅଛ ତୁମ ପାଇଁ
ସବୁ ଏବେ ହେବ ଅକାରଣ ।"

"ଏ ଲଗେ ଆସୁଛୁ ଫେର"—
କହିଦେଇ କୋମଳ ବଚନେ
ଚାଲିଗଲେ ବଇରାଗୀ
ଦୂତ ସଙ୍ଗେ ସସ୍ମିତ ବଦନେ ।

"ଡକାଇଲେ ପୁଣି କମ୍ପା"
ନମ୍ର ସ୍ୱରେ ବୋଇଲେ ନାନକ,
"ସମ୍ବାଦ ଯେ ଦେଇଥିଲ
ଦେଇନ କ ସମ୍ବାଦବାହକ ?"

Digitized by srujanika@gmail.com

ପିତୃବ୍ୟ ବୋଇଲେ, "ବାବା,
ତୋହ ଲଗି ଉତ୍ସୁକ ମୋ ମନ
ଆୟୋଜନ କରଅଛୁ
ସାଥି ହୋଇ କରିବା ଭୋଜନ ।"

"ଆଜ ଏଥି କେଉଁପରି
ସାଥି ହୋଇ କରିବା ଭୋଜନ ।
ଚର୍ମକାର ବନ୍ଧୁଘରେ
ଭୁଞ୍ଜିବାକୁ ଦେଇଚ ବଚନ ।"

"ନାନକ ତୁ କି କହୁଚୁ ?
କି ଖାଦ୍ୟ ତୁ ପାଇବୁରେ ତହିଁ ?
ଜାତ କୂଳ ଭୁଲିଯାଇ
କି କଥା ଏ ଯା'ଉଅଛୁ କହି ?"

"କାହିଁ ପାଇଁ ଦାଦା ତୁମେ
ଦୁଃଖୀଆକୁ ହୀନ ମନେ କର ?
ତୁମେ ଯେଉଁ ଖାଦ୍ୟ ଦେବ
ତାହାଠାରୁ ନିଶ୍ଚୟ ତା ଭଲ ।"

"ମୋହ ଖାଦ୍ୟଠାରୁ ଭଲ,
କି କହୁଚୁ, କି କହୁଚୁ ଆରେ;
ପ୍ରମାଣ ତାହାର ଏବେ
ଦେ' ମୋତେ ଦେ' ଏଇଠାରେ ।"

"ପ୍ରମାଣ ଦେଉଚ ତାର"
କହିଦେଇ କ୍ଷିପ୍ର ପଦେ ଚଳି
ନାନକ ଫେରିଲେ ପୁଣି
ଦରପୋଡ଼ା ରୁଟି ଖଣ୍ଡେ ଧରି ।

"ଦିଅ ତୁମ ଖାଦ୍ୟ ଏବେ"—
କହୁଁ କହୁଁ ପିତୃବ୍ୟ ନର୍ଦ୍ଦେଶେ,
ରଜତ ଥାଳରେ ଖାଦ୍ୟ
ଥୁଆହେଲା ଆସିଲ ନମିଷେ ।

Digitized by srujanika@gmail.com

ହାତକରେ ଥିଲା ରୁଟି
ଆଉ ହାତେ ତୋଳିନେଲେ ପୁରି,
ନାନକ ମୁଠାରେ ଧରି
ଜୋର କରି ଦେଲେ ତା ଚପୁଡ଼ି ।

ବିସ୍ମୟେ ଦେଖିଲେ ଜନ
କି ଝରିଲା ଉଭୟ ମୁଠିରୁ
ପୁରିରୁ ଝରିଲା ରକ୍ତ,
ଦୁଗ୍ଧଧାର ଝରିଲା ରୁଟିରୁ ।

ପିତୃବ୍ୟ କହିଲେ, "ବାବା,
ଦେଖୁଅଛ ଦ୍ରବ୍ୟ ତବ ମନ,
ଦୁଗ୍ଧ ସମ ସ୍ୱଚ୍ଛ ଶୁଭ୍ର
ନିଃସ୍ୱର ଓ ଈଶ୍ୱର ଜୀବନ ।"



## ମୁଁ ଏଇ ଜନ୍ମିଲି.......

ଅନନ୍ତ ପଟ୍ଟନାୟକ

[ ଓଡ଼ିଆ କାବ୍ୟଧାରାରେ ମାର୍କସବାଦୀ ଚେତନାର ରୂପକାର ରୂପେ କବି ଅନନ୍ତ ପଟ୍ଟନାୟକ ବିଶେଷ ସୁଖ୍ୟାତିର ଅଧିକାରୀ । 'ରକ୍ତଶିଖା', 'ତର୍ପଣ କରେ ଆଜି', 'ଶାନ୍ତି ଶିଖା', ତାଙ୍କ ବୈପ୍ଳବିକ ଚିନ୍ତାଧାରାର ବାଙ୍ମୟ ରୂପ । 'ଅଲୋଡ଼ା ଲୋଡ଼ା' ଓ 'ଗ୍ରାମର ଛବି' ତାଙ୍କର ଅନ୍ୟ କେତୋଟି ବହୁ ଆଦୃତ ସୃଷ୍ଟି । ତାଙ୍କ ସାହିତ୍ୟସୃଷ୍ଟି ଭିତରେ ତାଙ୍କର ରାଜନୈତିକ ଓ ସାମାଜିକ ଚିନ୍ତାଧାରା ଉପସ୍ନିଗ୍ଧ ହୋଇଛି ।

ମୁଁ ଏଇ ଜନ୍ମିଲି, ଆରେ !
ନୀଳାଚଳ ରକ୍ତାଚଳ ଆଜି !
ମୁଁ ଏଇ ଜନ୍ମିଲି ଆରେ !
ବ୍ୟର୍ଥତାରେ କଣ୍ଟକିତ
ସ୍ୱର୍ଣ୍ଣଫେଣୀ କୁସୁମେ, କୁସୁମେ,
ସ୍ନେହରକ୍ତ ସାମ୍ରାଜ୍ୟର
ହେମନ୍ତ ଉଷ୍ମେ
କେତେ ନୃତ୍ୟ ଉତ୍ସବର
ତାଳବନ୍ତ-ତଳେ
ଯୁଗାବ୍ଧିର କୂଳେ !
ମୁଁ ଏଇ ଜନ୍ମିଲି, ଆରେ !
ନବାବ୍ ଅଧର-ପୁଟେ ତାମ୍ବୁଲ ବିଳାସେ
ନିଃଶ୍ୱସିତ ମୁହୂର୍ତ୍ତର ଘଣ୍ଟିରୋଳେ ବାଜି,
ମୁଁ ଏଇ ଜନ୍ମିଲି, ଆରେ !
ପ୍ରାଣର ପ୍ରସାରେ
ଦୁର୍ଭୋଗର ନୀଳାଚଳ
ସମ୍ଭୋଗର ରକ୍ତାଚଳ ଆଜି !

ମୁଁ ଏଇ ଜନ୍ମିଲି, ଅନା !
ଶବ୍ଦହୀନ ନନ୍ଦନର କୋଳେ,
କାରୁଣ୍ୟର କଲ୍ପନା-ଗୌରବେ,
ବାଞ୍ଛାସ୍ୱିତ ତୃଷ୍ଣାର ଉଲ୍ଲୋଳେ
ମରଣାର୍ତ୍ତ ଜୀବନ ଗୌରବେ ।

Digitized by srujanika@gmail.com

ବୈଧବ୍ୟର ସ୍ୱମୂର୍ତ୍ତି ପ୍ରାର୍ଥନା
ଶୃଙ୍ଖଳିତ ମୁକ୍ତର ଚିତ୍କାର,
ମୁଁ ଏଇ ଜନ୍ମିଲି ଅନା !
ପ୍ରମତ୍ତର ସାତ୍ତ୍ୱିକ ସୀତ୍କାର ।

ଶଷ୍ପସ୍ନାନ ପ୍ରୀତିର ମନ୍ଦିରେ
ମୁଁ ଏଇ ଜନ୍ମିଲି, ଅନା !
ସ୍ୱର୍ଣ୍ଣସ୍ନାନ କାଳର କାନ୍ଥାରେ !
ଚନ୍ଦ୍ରଭାଗାର ଗ୍ରସ୍ତାଞ୍ଚଳ ଧାରେ
ଥରଯାଏ,—
ଥରଯାଏ ତାରୁଣ୍ୟର
ତାଳବନରାଜି ।
ମୁଁ ଏଇ ଜନ୍ମିଲି ଅବେ !
ଚଣ୍ଡାଶୋକ-ପ୍ରମତ୍ତ-ବନ୍ୟାରେ
ହ୍ରେଷାର ଆହ୍ୱାନ ଶୁଣି
ସମୂର୍ଚ୍ଛିତ ଖାରବେଳ-ବାଜୀ

କିଏ ଅଛୁ କାହିଁ, ଆରେ
ବାପା ମୋର,
ମାଆ ମୋର,
ଭାଇ ମୋର
ଭଉଣୀ ସ୍ୱଜନ !
କିଏ ଅଛୁ କୋଣାର୍କର କରୁଣ ସୈକତେ ?

କିଏ ଅଛୁ କାହିଁ ଆରେ !
ବନ୍ଧୁ ମୋର,
ମଧୁ ମୋର,
କେମା ମୋର !
ନିଷ୍କାମ କାମନାମଗ୍ନ କଣ୍ଟକିତ ପଥେ —
ଲୁଚେ ଲୁଚେ ଲବଣାକ୍ତ ନୈରାଶ୍ୟ ପଙ୍କତେ
ଅତନ୍ଦ୍ର ଅନ୍ୱେଷଣେ ଖୋଜି
ସ୍ୱପ୍ନର ପାଥେୟ,
ଉପଦ୍ରୁତ ଭାଇ ମୋର
ଭଉଣୀ ସ୍ୱଜନ !

Digitized by srujanika@gmail.com

ଦୁର୍ମର ଆଶାରେ ଆସି
କି ସତ୍ୟ-ପ୍ରତ୍ୟାଶୀ !
ମୁଁ ଏଇ ଜନ୍ମିଲି; ଅନା
ଇତିହାସ-ମର୍ମରିତ ଝାଉଁବଣ ତଳେ
ଯୁଗ ଯୁଗ ପ୍ରଧାବିତ ଯାତ୍ରୀର ଚହଲେ !

ମୁଁ ଏଇ ଜନ୍ମିଲି, ଆରେ !
ଉତ୍ସବର ବନ୍ଧୁକ-କ୍ରୀଡ଼ାରେ,
ନବତମ ଯାତ୍ରୀ ମୁହିଁ,
କାହିଁ ଦୂରେ କମାଣେ କମାଣେ,
ଆବର୍ତ୍ତିତ ମରଣର ଜୀବନ ପ୍ରମାଣେ !

ଆନନ୍ଦର ଆର୍ତ୍ତନାଦେ
ଜ୍ୱଳି ଉଠେ
ମୋ ଅଭିବାଦନ
ପ୍ରବୃଦ୍ଧ ମୁଁ,
ନିତ୍ୟ ଅଶ୍ୱବନ !

ଦିଗ୍‌ବଧୂ କପୋଳେ ଏଣୁ
ଝୁଲିପଡ଼େ ଉଲ୍‌କାର କରବୀ,
ମହିମାର ଭଗ୍ନ ଚୂଡ଼ୁଁ ଅଣିମାର ସିଢ଼ି ଯାଏ ସ୍ରବି !
ପ୍ରବୁଦ୍ଧ ହୁଅ ବସୁଧାର ସଭ୍ୟତା-ଗଣିକା,
ଅଗ୍ନିକୁଣ୍ଡ ପରେ
ନିର୍ବୋଧେ କୌତୁକେ ଖେଳ
ଉର୍ମିଳ ପ୍ରସ୍ୱରେ
ଅରେ ମୁହିଁ ଜୀବନର ନିର୍ମାଲ୍ୟ କଣିକା ।

ବେଦନାର ବଡ଼ବାଗ୍ନେ—
ପ୍ରୀତର କୈବଲ୍ୟ ଯାଚ
ଦୁର୍ନିବାର ଧ୍ୱଂସରେ ଧ୍ୱଂସରେ
କେତେ ରାଜକୀର୍ତ୍ତିର ଉପରେ
ଉଡ଼ାଇ ସ୍ୱର୍ଣ୍ଣର ଧୂଳି
ଫୁଲ୍ଲ ଫୁଲ୍ଲ
ଶାଶ୍ୱତ ନଶ୍ୱରେ ।

Digitized by srujanika@gmail.com

ସ୍ୱପ୍ନାଚ୍ଛନ୍ନ ଉଷାର ଆକାଶେ—
ମୁଁ ଯେ ତୁମ ସ୍ୱପ୍ନର କାହାଣୀ,
ରୋମାଞ୍ଚିତ ଚେତନାର ବାଣୀ !

ମୁଁ ଏଇ ଜନ୍ମିଲି, ଏଣୁ—
ବାପା-ମୋର
ଭାଇ ମୋର
ଏଇ ନତ ମଥା ମୋର ଆଜ !
ଧରଣୀର ଛିନ୍ନ ତୃଣ ସମ
ଆଗ୍ନେୟ କୁସୁମ ମୁଁ ଯେ,
ସ୍ନିଗ୍ଧ ଅନୁପମ,
ବିଜ୍ଞାନ ଚରମ ।

ମଥାଗ୍ନନ ସ୍କନ୍ଧ ପରେ ତୁମ
ହେ ନବୋଧ ! ହେ ଲାଞ୍ଛିତ !
ହେ ମୂର୍ଚ୍ଛିତ ରାଜ !
ରେଖିଦିଅ, ରେଖିଦିଅ ଆଜି--

ମୁଁ ଏଇ ଜନ୍ମିଲି, ଆରେ,
ଚଷକର, ଚଷିଯାଅ ଛବ !
ନିର୍ବିରୋଧ ସ୍ୱେଗୋଚ୍ଛ୍ୱାସେ
ଲେଖିଯାଅ ନିର୍ଭିକ କବିତା !
ବିଭ୍ରାନ୍ତ ମୋ ଜବ !
ଏଇ ମୋର ରକ୍ତର ତହଲେ
ବନ୍ଧୁକର ବନ୍ଧୁତାର ଛଳେ—
ଦୁର୍ଲ୍ଲଭର ସୁରେ ସୁରେ ବାଜି
ଥର ଉଠୁ ଗୋଲାପୀ ଭୈରବୀ ।



Digitized by srujanika@gmail.com

# ବିପ୍ଳବୀ କବି ଦୀନକୃଷ୍ଣ

କୁଞ୍ଜବିହାରୀ ଦାଶ

[ ଉତ୍କଳର କୁଞ୍ଜବିହାରୀ ଦାଶ ଏକ ବହୁମୁଖୀ ପ୍ରତିଭା । ତାଙ୍କ ଜୀବନ ସାଧନା-ସିଦ୍ଧ । ତାଙ୍କ ନିରବଚ୍ଛିନ୍ନ ସାଧନାରେ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଶସ୍ୟଶ୍ୟାମଳା ହୋଇଛି । ଜଣେ ପ୍ରକୃତିପ୍ରାଣ କବି ରୂପେ ଯୌବନରେ ସେ ନିଜର ସୌନ୍ଦର୍ଯ୍ୟପ୍ରାଣତାର ସୁପରିଚୟ ଦେଇଥିଲେ ଏବଂ ସାମ୍ପ୍ରତିକ କାଳରେ ତାଙ୍କ କବିତାରେ ବୌଦ୍ଧିକତାର ପ୍ରଲେପ ଦେଖିବାକୁ ମିଳେ । ଜଣେ ବିଶିଷ୍ଟ କବି ଓ ଗବେଷକ ରୂପେ ଖ୍ୟାତିଅର୍ଜନ କରିଥିବା ଏହି ବରେଣ୍ୟ ସ୍ରଷ୍ଟାଙ୍କର 'ମଣିମା ଶୁଣିମା ହେଉ' ଉପନ୍ୟାସସୃଷ୍ଟିରେ ମଧ୍ୟ ତାଙ୍କର ସିଦ୍ଧହସ୍ତତାର ପରିଚୟ ଦେଇଛି । ପ୍ରଭାତୀ, ପାଷାଣ ଚରଣେ ରକ୍ତ, ସ୍ମରଣିକା, ତୁଳସୀ, ବାଞ୍ଛା, ସାରଣୀ, ନବମାଳିକା, ନବକଲ୍ଲୋଳ, ମାଟି ଓ ମଠ, ଲଙ୍କାଯାତ୍ରୀ, ମୋ ସ୍ୱପ୍ନର କାଶ୍ମୀର ପ୍ରଭୃତି ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ସୁମହାନ୍ ସୃଷ୍ଟି । ]

ଦୀନକୃଷ୍ଣ ହେ କାବ୍ୟ କବିତା ମୋ ନାଁ କରିଲେ ଭଣିତା
ଧନ ସମ୍ପଦ ପଦ ଗୌରବେ ଦରବାରେ ହେବ ଗଣିତା,
ଜାଣ ତ ରାଜାର ଶକ୍ତି କ୍ଷମତା
ଝୁଙ୍କି ରୁହେ ନା କରୁଣା ମମତା
ତିଳେକ ଆଜ୍ଞା ହେଲେ ଅବଜ୍ଞା ! କାରାଦଣ୍ଡ ହେ ଜାଣିଥା
ଦୀନକୃଷ୍ଣ ହେ କାବ୍ୟ କବିତା ମୋ ନାଁ କରିଲେ ଭଣିତା ।

ମହାରାଜ, ନୁହେଁ ଧନ ସମ୍ପଦ ପଦଗୌରବ ଲାଳସୀ
ଦୀନକୃଷ୍ଣ ମୁଁ ତୃଷ୍ଣା ମୋ ଶ୍ରୀକୃଷ୍ଣ ଚରଣ ତୁଳସୀ,
ଆମ୍ଭାରେ କରି ଚିର ଅବନତ
ବଳି ଦେଇ ମୋର ମାନ ଇଜ୍ଜତ
ପଶୁ ହେବ ରାଜା ? ପଶୁଜାତି କେବେ କାବ୍ୟେ କି ଆଏ ହଳସି ?
ନୁହେଁ ନୁହେଁ ମୁହିଁ ଧନସମ୍ପଦ ପଦ ଗୌରବ ଲାଳସୀ ।

ଧନ ରାଜ ଖାଲି ଆଜ୍ଞା କ୍ଷମତା ମର୍ଦ୍ଦି ଶୋଷଣ
ଲକ୍ଷ୍ମୀ ଦୁଆରେ ସରସ୍ୱତୀ କି ଦେଖା କି ଦାସୀର ଆସନ ?
ସୃଷ୍ଟିର ସାର ରସ ଅନୁଭବ
ନୁହେଁ ସ୍ୱାର୍ଥ, ନୁହେଁ ସ୍ୱାର୍ଥୁକାର ଦବ
ସତ୍ୟର ଛବି ମହାବିପ୍ଳବୀ ଫୁଟାଏ ସେ ସହି କଷଣ
ରାଜକର ନୁହେଁ, କାବ୍ୟ ଛଡ଼ାଇ ନେଇଯିବ ତୁମ ଶାସନ ।

Digitized by srujanika@gmail.com

ଦୁଃଖରେ ତାର ଭୟ ନାହିଁ ଚିର ଦୁଃଖକୋଳେ ଯେ ଲାଳିତ
ଶିଖାଇଛୁ ମୋତେ ହେବୁ ନାହିଁ କେବେ କାହା ମର୍ଜ୍ଜିରେ ଚାଳିତ
ପ୍ରଭୁ ପଦେ ଠେଲି ସକଳ ଶଙ୍କା
ଡାଳିଦେବୁ ତହିଁ ହୃଦୟ ଭକ୍ତି
ଅଗ୍ନିର ଶିଖା ସମ ଅନ୍ତରେ ବିବେକ ରଖିବୁ ଜ୍ୱଳିତ
ଦୁଃଖରେ ତାରି ଭୟ ନାହିଁ ଚିର ଦୁଃଖ କୋଳେ ଯେ ଲାଳିତ ।

ଖଳ କୁଟିଳର ଯନ୍ତ୍ରଣାଭରା ରୁଦ୍ଧ ଏ ରାଜଭବନେ
ଶୁଖିଯାଏ ଯେତେ ଅନ୍ତର ଫୁଲ ହଲାହଳମୟ ପବନେ
କୋକିଳ କଣ୍ଠ ଚିପି ଧରି ଗାନ
ଶୁଣିବାରେ କିବା ବୀର ଅଭିମାନ
ଭଲଲାଗେ କିବା ପୋଷିତ ମୟୂର ସଙ୍ଗୀତରାଜ ଶ୍ରବଣେ
କବିତା ଫୁଟେ ନା ମରୁଭୂମି ତଳେ ଲାଞ୍ଛିତ କବି ଜୀବନେ ।

ସତ୍ୟରେ ଦେବ ନଶାଇ ସ୍ୱଚ୍ଛ ଫୁତ୍କାରେ ତବ ରାଜନ
ସ୍ୱର୍ଣ୍ଣରେ କେବେ ନଶାଇ ଦେବାକୁ ଇଚ୍ଛା କି ହୁଏ ରାଜନ ?
ଶତ ବଞ୍ଚନା ମିଥ୍ୟାର ଜାଲ'
ଜାଳି ଜଳାଉଠେ ସତ୍ୟ ମଶାଲ
ବୁଝେ ନାହିଁ କାଳ କ୍ଷମତାର ଦାବି କାଳେ କହେ ଯାହା ବୁଜନ
ସ୍ୱର୍ଣ୍ଣରେ କେବେ ନଶାଇ ଦେବାକୁ ଇଚ୍ଛା କି ହୁଏ ରାଜନ ?

ଆଜ ଯଶେ କେବେ କାବ୍ୟ କବିତା କରିବ ନାହିଁ ମୁଁ ଭଣିତ
ମୋ ଜୀବନ ଆଜ କବିତା ମୋହର ପ୍ରଭୁପଦେ ଏକ ପ୍ରଣତ,
ନର୍ତ୍ତକ ସନେ ସତ୍ୟ କହିଲେ
କ୍ଷମତାର ହାତେ ଯେ ଶାସ୍ତି ମିଳେ
ଦଣ୍ଡ ସେ ଶାସ୍ତି, ରାଜଦରବାରୁ ଶ୍ରେଷ୍ଠ କାରାଗାର ବସତ
ଆଜ ନାମେ କେବେ କାବ୍ୟକବିତା କରିବ ନାହିଁ ମୁଁ ଭଣିତ ।



Digitized by srujanika@gmail.com

# ହେ ସମୁଦ୍ର, ହେ ଆକାଶ !

ଗୋପାଳଚନ୍ଦ୍ର ମିଶ୍ର

[ ଆଧୁନିକ ଓଡ଼ିଆ ସାହିତ୍ୟରେ ଗୋପାଳଚନ୍ଦ୍ର ମିଶ୍ର ଏକ ବିଶିଷ୍ଟ ପ୍ରତିଭା । ବିଭିନ୍ନ ଗଦ୍ୟ ଓ ପଦ୍ୟସାହିତ୍ୟକୁ ନିଜ ସାଧନାରେ ସେ ସମୃଦ୍ଧ କରିଅଛନ୍ତି । କାକଳି, ପାଟଶାଣୀ, ଖିରୁ ମୂଷିକା, ବନ୍ଦେମା ଦିବାକର, କପୋତ ଦେଶର ଗୁଇ, ଟଲଷ୍ଟୟ ଓ ଗାନ୍ଧୀ ପ୍ରଭୃତି ଏହାର ପ୍ରମାଣ । କବିତା ରଚନାରୁ ତାଙ୍କ ସାହିତ୍ୟିକ ଜୀବନର ପ୍ରାରମ୍ଭ । ଜଣେ ରୋମାଣ୍ଟିକ କବିରୂପେ ତାଙ୍କର ଆବିର୍ଭାବ । ପରବର୍ତ୍ତୀ କାଳରେ ଗଦ୍ୟ ରଚନାରେ ମଧ୍ୟ ସେ ଯଶସ୍ୱୀ ହୋଇଛନ୍ତି । ]

ସୃଷ୍ଟିର ଆଦିମ କାଳୁଁ ହେ ସମୁଦ୍ର କରୁଛ ଗର୍ଜନ
ଶତ ଶତ ଶତାବ୍ଦୀର ତୃଷ୍ଣା ତୁମ ଜଳୁଛି ଅନ୍ତରେ,
କେବେ ତାହା ଶାନ୍ତ ହେବ କି ବା ତାହା ଅଶାନ୍ତ ପିପାସା ।
ସେଥିପାଇଁ ମଥା ପିଟି କାନ୍ଦୁଅଛୁ ବେଳାଭୂମି ପରେ
ସଂଖ୍ୟାହୀନ ବିକ୍ଷୋଭିତ କୋଟି କୋଟି ବୀଚିର ଗହଳେ,
କେତେ ରୁଦ୍ର ଜଳଧର ଅଶନିର ବାଜୁଛି ପହାର
କିବା ତାହା ଧ୍ୱଂସମୂର୍ତ୍ତି ନଟରାଜ ପ୍ରଳୟ ଡମ୍ବରୁ
ପୃଥିବୀକୁ ଜଣାଉଛି ପ୍ରତିକ୍ଷଣେ ଆସନ୍ନ-ସଂହାର ।

ସୃଷ୍ଟିର ଆଦିମ କାଳୁ ହେ ଆକାଶ ରହିଛ ମଉନ
ବକ୍ଷେ ଧରି ମୁଖରିତ ବିହଙ୍ଗର କଳକୋଳାହଳ,
ବକ୍ଷେ ପୁଣି ଚନ୍ଦ୍ର ତାରା ସବିତାର ନିତ୍ୟସଂକ୍ରମଣ
ହେ ଆକାଶ ମହାଶୂନ୍ୟ ତେବେ ମଧ୍ୟ ନୀରବ ନିଶ୍ଚଳ ।

ହେ ଆକାଶ ! ହେ ସମୁଦ୍ର ! ତୁମେ ଦୁହେଁ କରିଛ ପ୍ରମାଣ
ଧରାବାସୀ ମାନବର ବ୍ୟକ୍ତିତ୍ୱର ଦୁଇଗୋଟି ଦିଗ,
ଏକ ଦିଗେ ଅହିଂସାର ସ୍ନିଗ୍ଧ ରୂପ ମହନୀୟ ପ୍ରାଣ
ଅନ୍ୟ ଦିଗେ ପ୍ରକୃତିର ଅତ୍ୟାଚାରେ ପୀଡ଼ିତ ଜୀବନ;
ବନ୍ଦନୀୟ ଅହିଂସାରେ ଧ୍ୟାନମଗ୍ନ ପବିତ୍ର ମାନବ
ଅନ୍ୟ ଦିଗେ ହିଂସାମତ୍ତ ଦାନବର ବିଫଳ ଚିତ୍କାର,
ତପସ୍ୟାରେ ପରୀକ୍ଷିତ ଅନ୍ତରର ସୌନ୍ଦର୍ଯ୍ୟ ସୌରଭ
ଅନ୍ୟ ଦିଗେ ହିଂସାବଳ ଆତଙ୍କିତ ପ୍ରଳୟ-ହୁଙ୍କାର ।



Digitized by srujanika@gmail.com

# କାହିଁ ମୋ ଅପୋଡ଼ା ପିଣ୍ଡ

ଜାନକୀବଲ୍ଲଭ ମହାନ୍ତି

[ କବିତାହିଁ ଡକ୍ଟର ଜାନକୀବଲ୍ଲଭ ମହାନ୍ତିଙ୍କ ଲେଖନୀର ଆଦ୍ୟସୃଷ୍ଟି । ବିଭିନ୍ନ ସମୟରେ ତାଙ୍କ ପ୍ରାଣବୀଣାର ଝଙ୍କାର ତାଙ୍କ କବିତା ଭିତରେ ଶିଳ୍ପସୁନ୍ଦର, କଳାମଣ୍ଡିତ ରୂପରେଖ ଲାଭ କରିଛି । 'ଗାର୍ଫିଲ୍' ତାଙ୍କର ଏକ ଅନବଦ୍ୟ କବିତା ସଙ୍କଳନ । ଓଡ଼ିଆ ସମାଲୋଚନା ସାହିତ୍ୟକୁ ମଧ୍ୟ ଡକ୍ଟର ଜାନକୀବଲ୍ଲଭ ମହାନ୍ତିଙ୍କର ଅବଦାନ ଅନନ୍ୟ ସାଧାରଣ । ତାଙ୍କ 'ଓଡ଼ିଆ ସାହିତ୍ୟ ପରିକ୍ରମା', 'ସୃଷ୍ଟି ଓ ସମୀକ୍ଷା', 'ଆଧୁନିକ ଓଡ଼ିଆ ସାହିତ୍ୟ', 'ଦିବ୍ୟ ଅଦିବ୍ୟ' ଏହାର ପ୍ରମାଣ । 'ଓଡ଼ିଆ ଗୀତିକାବ୍ୟ' ତାଙ୍କୁ ଉଚ୍ଚକୋଟୀର ଗବେଷକ ରୂପେ ସମ୍ମାନିତ କରିଛି । ]

ଯେତେ ସାହା ପାଇଥିଲି ସମୁଦ୍ର କୂଳରେ
ଚର୍ଚ୍ଚିତ ଶାମୁକା ଅବା ବାଲିର ହରିଣ
ସିଏ ସବୁ କାହିଁଗଲେ !
ଏଠିକାର ପ୍ରଜାପତି ଓ ସଦାବିହାଗ ଫଲ
ବାଲିର କଂକଡ଼ା ସବୁ
ଫାଙ୍କିଦେଇ କେଉଁଠି ଲୁଚିଲେ !
ସିଏ ସବୁ ଏଠିକି ଆସିଲେ
ପ୍ରଜାପତି ଧରିବାରେ
ସେମାନେ ବି ବହୁତ ଡେଇଁଲେ ।

ମୁଁ ଯେମିତି ବହୁତ ଡେଇଁଲି ଏଠି
ଆପଣାକୁ ବାର ବାର ପ୍ରଦକ୍ଷିଣ କରି
ଅନେକ ଶବଙ୍କୁ ମୋର
ସ୍ୱର୍ଗଦ୍ୱାର ନିଆଁ ରେ ଥୋଇଲି ।
କିନ୍ତୁ
କାହିଁ ମୋ ଅପୋଡ଼ା ପିଣ୍ଡ
ଯାହାକୁ ମୁଁ ବହୁତ ଖୋଜୁଚି
କାହିଁ ମୋ ଲଳିତା ଅବା ରୂପସାନୁଜେମା
କାହିଁ ଅବା ସିଂହାସନ,
ଦାସଦାସୀ, ରଥଗଜ, ଆକାଶ ଭ୍ରମଣ

Digitized by srujanika@gmail.com

କାହିଁଗଲେ ଜନକ ଜନନୀ, ଭାଇ ବଳରାମ
ହାୟ ମୋ କଦମ୍ବତରୁ
ତମେ ଠିକ୍ ସେହିପରି ଅଛ ।

ହେ ଅଭିନ୍ନ ସଖା ମୋର, ପ୍ରାଣର ଦୋସର
କାହିଁକି ପୋଡ଼ୁଛ ମୋତେ .
ବନ୍ଧୁକଷ୍ଣ
ତୁମକୁ ମୋ ଶେଷ ଅନୁରୋଧ
ଖୋଜିଦିଅ ଅପୋଡ଼ା ପିଣ୍ଡକୁ ମୋର
ମୁକ୍ତିଦିଅ ମୋତେ ଏ ଦେହରୁ
ମେଲିଦେଇ ସାଗର ଗରଭେ
ହଜେଇ ଦିଅ ହେ ମୋତେ ଏଇନୀଳ ଶୀତଳ ପାଣିରେ
ତନରୁ ଭଲ ଏଇ ପାଣିରେ ଭାସିବା ।
କାହିଁ ମୋ ଅପୋଡ଼ା ପିଣ୍ଡ
ଯେ କଣବ ଯୁକ୍ତ ସତେ
ଦୁଇଟି କୂଳକୁ ।



Digitized by srujanika@gmail.com

# ଇନ୍ଦ୍ରଧନୁ

**ରମାକାନ୍ତ ରଥ**

[ ସ୍ୱାଧୀନୋତ୍ତର ଓଡ଼ିଆ ସାହିତ୍ୟରେ ରମାକାନ୍ତ ରଥ ଏକ ବଳିଷ୍ଠ ପ୍ରତିଭା । ତାଙ୍କ ସୃଷ୍ଟିରେ ନୂତନତାର ରଙ୍ଗରାଗ ଏବଂ ଭାବସମ୍ପଦରେ ମୌଳିକତାର ପ୍ରାଣସ୍ରୋତ ବିଶେଷ ଭାବରେ ଆମର ଦୃଷ୍ଟି ଆକର୍ଷଣ କରିଥାଏ । 'କେତେ ଦିନର', ଅନେକ କୋଠରି, ସନ୍ଦିଗ୍ଧ ମୃଗୟା ଓ ସପ୍ତମ ଋତୁ ତାଙ୍କୁ ଜଣେ ଉଚ୍ଚକୋଟୀର କବି ରୂପେ ପ୍ରଶଂସିତ କରିପାରିଛି । ]

ମୁଁ ତମକୁ ଡାକୁଥିଲି ସତେ ଅବା ମର୍ତ୍ତ୍ୟ ପୋଖରୀରେ
ଭାସୁଥିବା ହଂସ ଏକ ଡାକୁଥିଲା ପଡୁଆ ହଂସକୁ
ପୋଖରୀର ହୁଡ଼ା ଭାଙ୍ଗି ଯେତେବେଳେ ପାଣି ଆସିଗଲା ।
ତମେ ଫେରି ବୁଝିଲନ । କାହାପାଇଁ ଏତେ ବେଶୀ ଭୟ ?
ଏବଂ ଓଦା ଶାଳପତ୍ରେ ଚକ୍ ଚକ୍ ଖରା ଝଲସୁ ଥିଲା
ସତେ ଅବା ପାଲ୍‌ଟଣ କେତେ, ଶୋଇଥିଲେ ସୂର୍ଯ୍ୟମୁହାଁ ହୋଇ
ଓ ତାଙ୍କ ନମ୍ବରମାନେ ପାଲିସ୍‌ରେ ଜଳଜଳ ଜଳିଲା ।

କାହାକୁ ଡରିଲ ତମେ ? ଆମେ ଫେରି ଦେଖିଲୁ ଗାଆଁରେ
ସବୁରି ଧବଳା ମେଳା, କେଉଁଠାରେ କୁଣ୍ଡିତ ଧୂମ୍ରର
ଓଟାରି ହେବାର ଚିହ୍ନ, କେଉଁଠାରେ ବୁଣା ମାଣ୍ଡିଆ ଆଉ
ଅନ୍ୟଠାରେ ଭଙ୍ଗାହାଣ୍ଡି, ଲାଉତୁମ୍ବା ଅଥବା ଜୁଆଳି ।
ସେମାନେ ଯେମିତି ମଧ୍ୟ ପଳାଇବା ନିମିତ୍ତ ଉଦ୍ୟତ
ଅଥଚ ପାରନ୍ତି ନାହିଁ । ଗାଆଁ ମୁଣ୍ଡ ଦୋଛକି ରାସ୍ତାରେ
କାଚ ଓ ମନ୍ଦାର ଫୁଲ, ମୋଡ଼ା ମୁର୍ଗୀ ଏବଂ ଦୁର୍ବାକ୍ଷତ ।
ପାହାଡ଼ ଉପରୁ ଆମେ ତାହାପରେ ଦେଖିଲୁ ତମର
ଲମ୍ବା ଲମ୍ବା ଗୋଡ଼ ଏବଂ ବ୍ରିଗେଡ୍ ଭଳି ଡାହି ପରି ହାତ,
ମଟରର ଆଲୁଅରେ ଗ୍ଳାଇ ପରି ଆକାଶ ଛୁଉଁଚି
ବସ୍ତିର ପୁନରୁଦ୍ରେକ, ବାରିଆଡ଼େ ଜଙ୍ଗଲ ସଫେଇ,
ଚୁଲିଚରି ଧୂଆଁ ଏବଂ କଏ ହଠାତ୍ ଲାଜେଇ ଯାଉଚି ।
ଏ ଲାଜ କାହାକୁ ? ଯଦି ସେତେବେଳେ ଲାଜ ଲାଗିନାହିଁ
ଏ ଲାଜର କି କାରଣ ଯେତେବେଳେ ସମାପ୍ତ ହୋଇଚି ?

Digitized by srujanika@gmail.com

ତାପରେ ଦେଖିଲୁ ଆମେ ତମ ସାଙ୍ଗେ ହଠାତ୍ ଦଗନେ
ବିଭିନ୍ନ ଦୀପ୍ତିରେ ଦଗ୍ଧ ଇନ୍ଦ୍ରଧନୁ ଆର୍ଦ୍ର ପୁଣି ସ୍ଫଟିକ ବର୍ଷାରେ
ସାପ ପରି ଚକ୍ ଚକ୍ କରୁଥିଲା ଆକାଶର ସନ୍ଦେହ ଭିତରେ ।

ତମେ; କିନ୍ତୁ ଦୌଡ଼ିଗଲ ପଛ କରି ଆମ ଓ କେ ଇତସ୍ତତଃ ହେଲ
ଏବଂ ଆମେ ଜଳୁଥିଲୁଁ ଯେତେବେଳେ ବିଭକ୍ତ ଅନ୍ତରେ,
କେଉଁଫଟା ଦର୍ପଣରେ ମୁହଁଦେଖା ପରି କରି ମୁହଁ
ପରସ୍ପରେ ଜାକି ଧରି ଅଛୁଥିଲ ଆପଣାର ମଝି ବଖରାରେ ।

ସବୁ ବାରି ହେଉଥିଲ, ତମର ସେ ପରସ୍ପର କୋଡ଼େ
ପରସ୍ପର ମୁହଁଲୁଚ୍ଚା ଅନ୍ଧାରରେ ଯାହା ରକ୍ଷା କରେ କାରଣ ସେ
କିଛି ଦୃଶ୍ୟ କରେ ନାହିଁ । ଚଳନ୍ତ ମେଘ ପରି ଯେତେବେଳେ
ଆମ ମନେ ଖସୁଥିଲା ପକ୍ଷୀରବା ନିମିତ୍ତ କଳ୍ପନା
ଆମକୁ ଦିଶିଲ ତମେ କେତେ ଶେତା ସ୍ତ୍ରୀ ଲୋକଙ୍କ ମେଳେ
ଆମକୁ ପ୍ରାର୍ଥନା କରି ନ ଫେରିବା ପାଇଁ ପୁନର୍ବାର
ନିଜ ରୂପେ କିମ୍ବା ଇନ୍ଦ୍ରଧନୁ ରୂପେ ତମ ନୂଆ ଗାଆଁ ଚଢ଼ିବାକେ ।



Digitized by srujanika@gmail.com

# କୁବୁଜା ପାଇଁ ଗୋଟିଏ ସଂଗୀତ

ସୀତାକାଂତ ମହାପାତ୍ର

[ କବି ସୀତାକାନ୍ତ ମହାପାତ୍ର ସାମ୍ପ୍ରତିକ ସାହିତ୍ୟର ଅନ୍ୟତମ ବରେଣ୍ୟ ପ୍ରତିଭା । ତାଙ୍କ କବିତାରୁ ପ୍ରତୀକ ଏବଂ ଚିତ୍ରକଳ୍ପର ପ୍ରୟୋଗ ବିଶେଷ ଆକର୍ଷଣୀୟ କରିଛି । ହୃଦୟର ସ୍ୱତଃସ୍ଫୂର୍ତ୍ତି ସହ ସହିତ ବୌଦ୍ଧିକତାର ମଣିକାଞ୍ଚନ ସଂଯୋଗରେ ତାଙ୍କର ସୃଷ୍ଟି ଅନବଦ୍ୟ । ମିଥ୍ ପ୍ରୟୋଗରେ ଦକ୍ଷତା ତାଙ୍କ କବିତାର ଅନ୍ୟତମ ଆକର୍ଷଣ । 'ଦୀପ୍ତି ଓ ଦ୍ୟୁତି', 'ଅଷ୍ଟପଦୀ', 'ଶବ୍ଦର ଆକାଶ' ପ୍ରଭୃତି ତାଙ୍କର ପ୍ରତିଭାର ଇନ୍ଦ୍ରଜାଲ । ]

ଅନେକ ବର୍ଷ ବିତିଛି ମଥୁରାର ରାଜଦାଂଣ୍ଡେ
ନିର୍ମମ ନିର୍ମେଘ ନୀଳ ନୀରବ ଶୂନ୍ୟ ଆକାଶେ
କାଚ ଆଖିଡୋଳା ନେଇ
ହାଡ଼ଭଂଗା ଜାଡ଼ର ଦାଉରେ
ଧୂସର ହେମଂତ ଆଜି
ଚଇତର ନିଃସ୍ୱପନ କରୁଣ ରାଗିଣୀ
ଆକାଶର ପାଣିଚିଆ
ଶୁଖିଲା, କାଉଁଦା ମୁହଁ
ଧୂଳିର ସମୁଦ୍ରତଳୁ ବସଂତର ବକୁଳର ଗନ୍ଧେ
ଜରାଗ୍ରସ୍ତ ସୀମିତ ଏ ମନର ଝରକା ଫାଂକେ
ଅସରଂତ ସମୟର ଆବର୍ତ୍ତନେ
ଗଣି ଗଣି ବର୍ଷ, ମାସ, ଦିନ, ଦଂଡ, ପଳ
ନିଦାଘର ରୌଦ୍ର ତେଜି ଗୁରୁଗଂଭୀର ନିନାଦେ
ମନର ଦିଗଂତେ କେବେ ଉଦେ ହେବ ବଉଦ ସଜଳ ॥

ଅନେକ ଧନ ଦରବ,
କଂସରାଜା ଚଂଦନେ ସଂତୋଷ ହୋଇ,
ଉପଭୋଗ କରିବାକୁ ଦାନ ଦେଲା ତିନିଗୋଟି ଦେଶ;
ତେଣୁ କାଖେ ପେଡ଼ି ଧରି ମଥୁରାର ରାଜପଥେ ଯାଏ ଚାଲି
ସୁଗଂଧ ଗଂଧ ଚଂଦନ ନିତି ନେଇ ଭେଟେ ମୁଁ ଯେ କଂସର ଭ୍ରୁମୂଳେ
ପ୍ରଜାପାଳକ ମୁଁ, କରେ ରାଜାଦେହେ ସୁରଗଂଧ ଲାଗି

Digitized by srujanika@gmail.com

ଆଜନମ୍ମ ଅଭିଶାପ୍ତୀ, ସ୍ୱାମୀ ନାହିଁ, ଶୂନ୍ୟ ମୋର କୋଳ
ଶୂନ୍ୟ ମୋର ହୃଦ-ସରେ ଊର୍ମି ନାହିଁ
ନାହିଁ ନାହିଁ ପବନ ହିଲ୍ଲୋଳ
(ଏ ଅଶୋକ ବୃକ୍ଷ ଦେଖି କେହି ମୋତେ ନୋହିଲେକ ବନ୍ଧ୍ୟା)
ଅସାର ଜୀବନ ମୋର ମରୁପଥ ପାଦଚିହ୍ନ
ସଂସାର ମୁଁ ଏକାଂତ ବିଯୋଗୀ ॥

ମୋହ ପାଇଁ ଗଂଧ ନାହିଁ, ରଂଗ ନାହିଁ
ବର୍ଣ୍ଣ ନାହିଁ, ସ୍ୱରଶିଳ୍ପ ନାହିଁ
ସବୁ ସେହି ରଂଗହୀନ, ବର୍ଣ୍ଣହୀନ, ଗଂଧହୀନ, ସ୍ୱରହୀନ
ଧୂସର ଓ ନୀରବତା ଗ୍ରାସ ॥

ଦିନ ଦିନ, ମାସ ମାସ, ବର୍ଷ ବର୍ଷ, ମନ୍ୱଂତର ମନ୍ୱଂତର ଧରି
ମୁଁ ଖାଲି ସେବିଛି କୃଷ୍ଣ ଅସୁରକୁ ଛଳଣା ବିଯୋଗେ
ତେଣୁ ମୋ ଦେହ, ମୋ ମନ ଆତ୍ମାର ବିଦାଘ ଜ୍ୱାଳା
ଧୂ ଧୂ ଆଶାହୀନ ଶୂନ୍ୟ ପ୍ରାଂତରରେ
ଘାସର ଲହରୀ ନାହିଁ, ବାଦଲର ଗ୍ରାସ ଟିକେ ନାହିଁ
ପୂତିଗଂଧମୟ ଏଇ ମଥୁରାର ନରକରେ
ସମସ୍ତ ଯଂତ୍ରଣା ତାପ କ୍ଳେଶ ଅନୁଯୋଗେ ॥

ଏ ମୋହର ବ୍ୟର୍ଥତାରେ ବ୍ୟାକୁଳିତ ସାରା ପୃଥ୍ୱୀ
ଆଲୋଡ଼ିତ ସସାଗରା ଧରା
ମଥୁରାରେ ପ୍ରାଣ ନାହିଁ, ଅନେକ ମୃତ ହୃଦୟ
ଦିନ ବାଂଝ ବୃଦ୍ଧାମନ
ଅଶ୍ଳୀଳ ଦେହ ଓ ପ୍ରାଣ
ଅଭିଶପ୍ତ ନଷ୍ଟ ଲୋକେ
ଚଂଦନରେ ଅଭିଲିପ୍ତ ସଜେ ଅବା ମୃତ ଦେହ, ମୃତ ପ୍ରାଣ
ମୃତ୍ୟୁର ଶୀତଳ ସ୍ପର୍ଶେ ସକଳ ବିଶେଷ ॥

ଅଣୁରେ ରକ୍ତକଣାରେ, ସ୍ନାୟୁ ଓ ନାଡ଼ୀରେ
ବ୍ୟର୍ଥତାର ବେଣୁ ଖାଲି ବାଜୁଅଛି ଅନାହତ
ମୋର କୋଟି ଜନମର, କୋଟି ଅବ୍ଦ ସ୍ୱପ୍ନର
ସକଳ ଆହତ ପ୍ରାଣ, ଭଗ୍ନ ଓ ବିଫଳ ସ୍ୱପ୍ନ
ବିଳଂବିତ ବସଂତର ବିଡ଼ଂବିତ ସମାରୋହେ
ବିଷାକ୍ତିତ ଅଭିଲେଖ ତନୁ ଓ ମନରେ

Digitized by srujanika@gmail.com

ଆଶା ଓ ଆକାଙ୍‌କ୍ଷା, ସ୍ୱପ୍ନ ଧାଡ଼ିମାର ମରିଛଂତି
ପୁଅ, ନାତି, ଅଣନାତି, ପଣନାତି କୋଟି ଜନମରେ ॥

ହିସାବ ନିକାଶ ଆଜି—
ସବୁ ସେଇ ମୃତମେଘ
ମୃତଧୂଳି ମୃତବସ୍ତ୍ର ଏଇ ଧରଣୀର !
ଯୋଜାଏ ଚଂଦନ ରୂଇ, ସ୍ୱଦସ୍ତାସ୍ତ
ମାଗିଲି ଯା' ମତେ !
ଚଂଦନ ପ୍ରାପତ ଯା'ଙ୍କୁ ଚଂଦନ ଫେରିଲା ଆଜି
ସେଇ ମୂଳ ପ୍ରଥମଙ୍କୁ
ଚଂଦନ ଦୁଇ ସ୍ୱଇଂକ ହେ ରଂଙ୍କୁଣା ଆପ୍ରାପତ ସତେ !

ଆଜି ସତେ ମଳିନ ଏ ପୋଡ଼ାଜଳା
ଅପରାହ୍‌ଣ ପ୍ରାଂତରରେ
ଶ୍ୟାମଘନ ବହ୍ୱଦର ପ୍ରାଣଛୁଆଁ ଗ୍ରୁଇ
ହାଟୁଆର-କୂଳେ ଜାତ ଆଜନ୍ମ କୁବୁଜା
ମୋର ମନ ଯାଏ କଦଂବ କୁସୁମ ସମ
ଉଲ୍ଲସିତ, ମୁକୁଳିତ ହୋଇ ।
ଶ୍ରାବଣର ମଲ୍ହାରେ ସଂଗୀତର ଶିହରଣ
ଜାଉଁଣ୍ଠି ପବଣେ ତୋର ଉଚ୍ଛଳିଲା ଜଗ
ଭଂଗା ସ୍ୱପ୍ନ ଗଢ଼ାହେଲ
ଚିରା, ଫଟା, ତାଳିପଡା ମନ ଆଜି ଦରିଦ୍ର ହେଲା
ବଉଦ ବିଜୁଳି ଛୁଟରେ, ବର୍ଷା ଝରେ
ନବଜନ୍ମ ସପାଗର ଧରା ॥

କପାଳେ ତୋ ଚଂଦନର ଠିଆଚିତା ଲେଖିଲି ମୁଁ
ଧୂସର ଆକାଶେ ଗ୍ରୁଟି ଘନନୀଳ ରଶ୍ମିରିତା
[illegible]ଦଦେଶେ ଅପାର ମୁକ୍ତା,
ଦୁଳହୁଳି ନାଦେ ଭରି ମଥୁରାର ରାଜଦାଂଡ
ଚଂଦନ ଲେପିଲି ତୋର ନାଭିକୁ ଶିରସି
ଛଳେ ପାଦ ଚୁପି ମୋର ଚିବୁକ ଦେଲୁ ତୁ ଟେକ
ଉଜ୍ଜୀବିତ ଆଶା, ସ୍ୱପ୍ନ ମାଂସ ଅଛ ପ୍ରାଣର ସରସୀ ॥

ହେ ପରମ ଆଦିମୂଳ
ଆଜି ତେଣୁ ମୁକ୍ତ ମାଗେ

Digitized by srujanika@gmail.com

ଅଭିଶପ୍ତ ମଥୁରାର ବନ୍ଦୀ ନରଲୋକ
ତୋ ଚରଣରେଣୁ ସ୍ପର୍ଶେ
ଝରିଯାଉ ଜୀବନର ଅମାର କଳୋକ
ଶେଷ ହେଉ ଧୂସରର, ମୃତ୍ୟୁ ଆଉ ବିଭଂଗ କାଳର
ଅଂତ ହେଉ ଅଶ୍ଳୀଳ ଓ କୁତ୍ସିତର ରାଜପୂଜା
ଶୁଖିଲା ଆକାଶେ ଜାଗୁ ମେଘମାଳା; ହାଂଡ଼ିକନା ଧୂମିର ଘୁମର ॥

ଏ କୁଂକୁମ ଲିପା ସ୍ନାନ, ଝୀନବାସ, କଂକଣ କେୟୂର,
ହୃଦୟେ ଯେତେ ଚଂଦନ,
କଂଠେ ହାର, ତାଂବୂଳରେ ସୁରଂଗ ଅଧର
ଏ ସୁଗଂଧ ଧୂପଦୀପ, ନଇବେଦ୍ୟ ମୁକ୍ତା ଓ ପ୍ରବାଳ ଖଂଜଣି
ଏ ରୂପାଦୁଳା ଆଉ ସୁନା ପିଢା, ଚଂଦ୍ରାତପ
ତୋର ଲଗି ନିମେଷକୁ ଯୁଗପ୍ରାୟ ମଣି;
ସବୁ ହେ ମୂଲ ପ୍ରଥମ
ହେ ଅନାଦି ଶ୍ୟାମଘନ !
ଆଜି ତୋ'ର ପାଇଁ
ଦେହ, ମନ, ହୃଦୟ ଓ ଆତ୍ମାର ନିଦାଘ ଶେଷେ
ରୌଦ୍ରକାଳ ନିପୀଡ଼ିତ ସମସ୍ତର ପଥଶେଷେ
ସୀମିତ ଅପୂର୍ଣ୍ଣ, ରୁଗ୍‌ଣ, କ୍ଲିବ୍‌ଜପ୍ରାଣ ମରୁଶେଷେ
ସ୍ୱପ୍ନ-ଷମା କୁରୂଜା ସେ
ଦେହ, ମନ, ହୃଦୟ ମଂଡାଇ
ବସିଅଛି ପଥ ତୋ'ର ଚାହିଁ ॥



Digitized by srujanika@gmail.com

# ବଣି

**ଚନ୍ଦ୍ରାମଣି ବେହେରା**

[ ଜଣେ ବିଶିଷ୍ଟ କବି ଓ ବିଶିଷ୍ଟ ସମାଲୋଚକ ରୂପେ ଅଧ୍ୟାପକ ଚନ୍ଦ୍ରମଣି ବେହେରା ଓଡ଼ିଆ ସାହିତ୍ୟରେ ସୁପରିଚିତ । ରୋମାଣ୍ଟିକ ସ୍ୱଚେତନା ତାଙ୍କ ବହୁ କବିତାର ବିଭବ । ଜଣେ ଉଚ୍ଚକୋଟୀର ସମାଲୋଚକ ରୂପେ ମଧ୍ୟ ସେ ବିଶେଷ ଖ୍ୟାତିର ଅଧିକାରୀ । ତାଙ୍କ ସାଧନାରେ ଓଡ଼ିଆ ପଦ୍ୟ ଓ ଗଦ୍ୟ ସାହିତ୍ୟ ସୁସମୃଦ୍ଧ ହୋଇଛି । ଶ୍ୱେତପଦ୍ମ, ସ୍ୱପ୍ନିକା, ନୂତନ-ସ୍ୱାକ୍ଷର, ହେ ବୈଦେହୀ ଭୁଲିଯାଅ, ନୀଳଲୋହିତ, ତୃତୀୟ ଚକ୍ଷୁ ପ୍ରଭୃତି କବିତା ସଙ୍କଳନ ଏବଂ କାବ୍ୟ ଓ କଳାକାର ସମାଲୋଚନା ଗ୍ରନ୍ଥ ଏହାର ପ୍ରମାଣ । ]

ବାଉଁଶ ବାଡ଼ର ଏକ ନଇଁକିଆ ଖୁଣ୍ଟା ଅଗ ପରେ
ବଣିଟିଏ ବସିଅଛି ନିଜ ମନେ ନିରୋଳା ଏକାକୀ
କଚର ମିଚର କରି ଚୁଁ ଚୁଁ ତାର ନିଜ ପର ତଳେ
ବୁଲାଇ ଆଣୁଚି କେବେ ପର ସବୁ କିରଣରେ ସେକି ।

ଝାଡ଼ୁଚି ଦେହର ଧୂଳି, ଲାଗିଥିଲା ପରେ ଯେତେକ ମଳି
କୀଟର ଖୋଜରେ ଯେବେ ଦେଇଥିଲା ଯାଇ ଯୋଗଦାନ
ଏଇ ବଣି ସେତେବେଳେ ହୁଏତ ବା ଯାଇଥିଲା ଭୁଲି ।
କୀଟର ମେଳାରେ ବସି ଆକାଶରେ ଉଡ଼ିବାର ଗାନ ।

ସେଥିପାଇଁ ଅବସରେ, ବସି ଏଇ ଖୁଣ୍ଟା ଅଗ ପରେ
ଦେହର ମଇଳାତକ କିରଣରେ ଧୋଇଦିଏ ମାଜି
ଗୀତ ଗାଏ, ଉଡ଼ିଯାଏ, ଆକାଶର ନୀଳ ପଡ଼ିଆକୁ
କିଛି କାଳ ବସି ତାର ପର ସବୁ ପୁଣି ଥରେ ସାଜି ।

ମନ ମୋର ଏଇ ବଣି ପରି, ପଙ୍କ କୀଟ ଖୋଜି ବେଳେବେଳେ
କୀଟର ଉତ୍ସବେ ମାତି ଭୁଲିଯାଏ କିରଣର ଡାକ
ସବୁଜ ଆକାଶ ଭୁଲି, ଭୁଲି ତାର ଦୂର ପଥ ଗାନ

କୀଟର ଖୋଜରେ ବସି କରୁଥାଏ କୀଟ ଖାଲି ପାକ ।

ପୁଣି ଯେବେ ସରିଯାଏ ଖୋଜି, ଅବସନ୍ନ ଘୃଣ୍ୟ ଦେହ ଧରି
ବଣି ପରି ମୁକ୍ତ ପୁଣି ଖୋଜେ ମନ ମୋର ଉଡ଼ିବାର ସୁଖ ।
ମୋ ମନର ପର ତଳ କିରଣର ଶାଣେ ନେଇ ମାଜି
ଛନ୍ଦ ତୋଳି ନାଚି ଉଠେ ଭୁଲି କୀଟ ଉତ୍ସବର ଦୁଃଖ ।



Digitized by srujanika@gmail.com